# ଭୂମିକା ।

—•—

ମହାତ୍ମା ଫ୍ରୋବେଲ୍‌ସାହେବଙ୍କ ପ୍ରବର୍ତ୍ତିତ ଶିଶୁଶିକ୍ଷାପ୍ରଣାଳୀ ସମ୍ପ୍ରତି ଓଡ଼ିଶାର ପ୍ରାଥମିକ ବିଦ୍ୟାଳୟସମୂହରେ ପ୍ରଚଳିତ ହେଉଅଛି । ଶିଶୁମାନଙ୍କର ଶାରୀରିକ, ମାନସିକ ଓ ନୈତିକ ଶକ୍ତିମାନଙ୍କର ସର୍ବାଙ୍ଗୀନ ଉନ୍ନତି ସାଧନ କରିବା ଏ ଶିକ୍ଷାର ପ୍ରଧାନ ଉଦ୍ଦେଶ୍ୟ । ଶିଶୁମାନେ ସ୍ୱଭାବତଃ ଖେଳାପ୍ରିୟ, ସେମାନେ ଅଧିକାଂଶ ସମୟ ଖେଳିବା, ବୁଲିବା ଓ ଇଚ୍ଛାନୁସାରେ କାର୍ଯ୍ୟ କରିବାକୁ ଭଲପାନ୍ତି । ଏପରି ଖେଳିବା ଦ୍ୱାରା ସେମାନଙ୍କର ଅଙ୍ଗପ୍ରତ୍ୟଙ୍ଗର ଚାଳନା ହୁଏ, ସେମାନେ ଭିନ୍ନ ଭିନ୍ନ ପଦାର୍ଥ ଚିହ୍ନିବା ଓ ନୂତନ ବିଷୟ ଜାଣିବା ପାଇଁ ସ୍ୱଭାବତଃ ଚେଷ୍ଟା କରନ୍ତି । ଘୋଡ଼ାଚଢ଼ିବା ଦେଖି ବାଡ଼ିଉପରେ ବସି ପିଲାମାନେ ଦୌଡ଼ାଦୌଡ଼ି କରନ୍ତି, କାଠି ସଂଗ୍ରହ କରି ବାଲିରେ ଘର କରନ୍ତି । କୃଷକଶିଶୁମାନେ ଆମ୍ବଟାକୁଆକୁ ଲଙ୍ଗଳ କରି ବାଲିରେ ଚାଷ କରନ୍ତି । ଏହିପରି ସେମାନେ ଯେ କାର୍ଯ୍ୟ ଦେଖନ୍ତି ତାହାର ଅନୁକରଣ କରି ଶିକ୍ଷା କରିବାକୁ ଚେଷ୍ଟା କରନ୍ତି । ଖେଳା କରୁ କରୁ ଏହିପରି ଶିକ୍ଷା କରିବା ପିଲାମାନଙ୍କ ପକ୍ଷରେ ସ୍ୱାଭାବିକ ଅଟେ । ଏଣୁ ଫ୍ରୋବେଲ୍‌ସାହେବ ପିଲାମାନଙ୍କର ଖେଳଗୁଡ଼ିକ ଶିଶୁଶିକ୍ଷାର ଅନ୍ତର୍ଗତ କରିଅଛନ୍ତି । ବାସ୍ତବିକ ଶିଶୁଖେଳ ~~ଶିଶୁଶିକ୍ଷାର ବିଶେଷ~~ ସାହାଯ୍ୟ କରେ । ଏହି ଉଦ୍ଦେଶ୍ୟରେ ମୁଁ କେତେଗୁଡ଼ିଏ ଉପଯୋଗୀ ଖେଳଗୀତ ଲେଖି ଅନୁଗୁଳ ପାଠଶାଳାମାନଙ୍କରେ ପ୍ରଚଳିତ କରିଅଛି । ସେହି ଗୀତଦ୍ୱାରା ପିଲାମାନଙ୍କର ଉପକାର ହେଉଥିବାର ଦେଖି ତାହା ପୁସ୍ତକାକାରରେ ପ୍ରକାଶ କଲି । ଆଶାକରେଁ

ଓଡ଼ିଶାର ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ଓ ଶିଶୁମାନଙ୍କର ତଦ୍ୱାରା ଅବଶ୍ୟ ଉପକାର ହୋଇପାରିବ । ଏହି ଗୀତଗୁଡ଼ିକ ଚାରି ଭାଗରେ ବିଭକ୍ତ କରାଯାଇଅଛି । ଯଥା ;—

୧ମ ଭାଗ—ରେଖା, ବର୍ଣ୍ଣ, ପଦାର୍ଥ ଓ ଇନ୍ଦ୍ରିୟ ସମ୍ବନ୍ଧୀୟ ଗୀତ ।

୨ୟ ଭାଗ—ପରିଶ୍ରମର ମାହାତ୍ମ୍ୟଶିକ୍ଷାବିଷୟକ ଗୀତ । ଲୋକେ ଆପଣା ବ୍ୟବସାୟ ଛାଡ଼ି ଅନ୍ୟ ବ୍ୟବସାୟ କରିବାକୁ ଘୃଣା ପ୍ରକାଶ କରନ୍ତି । ଏହି ଭ୍ରମ ପିଲାମାନଙ୍କ ମନରୁ ଦୂର କରିବା ଏହି ଗୀତମାନଙ୍କର ଉଦ୍ଦେଶ୍ୟ । କେବଳ ପାଞ୍ଚଗୋଟି ଗୀତ ଆଦର୍ଶ-ସ୍ୱରୂପ ଦିଆଯାଇଅଛି, ଶିକ୍ଷକମାନେ ସେହିପରି ଅନ୍ୟାନ୍ୟ ବ୍ୟବସାୟ ସମ୍ବନ୍ଧରେ ଗୀତ ଲେଖି ଶିକ୍ଷା ଦେଇପାରିବେ ଓ ପରିଶ୍ରମର ମାହାତ୍ମ୍ୟ ବୁଝାଇଦେବେ ।

୩ୟ ଭାଗ—କର୍ମ୍ମସଙ୍ଗୀତ । ପିଲାମାନେ ଏହି ଗୀତଗୁଡ଼ିକ ଗାନ କରୁ କରୁ ହସ୍ତପଦାଦି ଚାଳନ କରିବେ । ତଦ୍ୱାରା ସେମାନଙ୍କର ଶାରୀରିକ ଉନ୍ନତି ସଙ୍ଗେ ସଙ୍ଗେ ଅନ୍ୟ ବିଷୟର ଶିକ୍ଷା ହେବ ଓ ସେମାନଙ୍କ ମନରେ ବିଶେଷ ଆନନ୍ଦ ଜାତ ହେବ । ଗୀତର ଯେଉଁ ସ୍ଥାନରେ ଯେପରି ଭାବରେ ଲେଖାଅଛି ତଦନୁସାରେ ହସ୍ତପଦାଦି ଚାଳନ କରିବାକୁ ଶିକ୍ଷକ ପିଲାମାନଙ୍କୁ ଶିକ୍ଷା-ଦେବେ । ପ୍ରଥମ ଭାଗରେ ଇନ୍ଦ୍ରିୟସମ୍ବନ୍ଧୀୟ ଗୀତଗୁଡ଼ିକ ମଧ୍ୟ କର୍ମ୍ମଗୀତରୂପେ ବ୍ୟବହୃତ ହୋଇପାରିବ ।

୪ର୍ଥ ଭାଗ—ଅଭିନୟ ବା ଖେଳଗୀତ । ଏହି ଗୀତଗୁଡ଼ିକ ଗାଇବା ସଙ୍ଗେ ସଙ୍ଗେ ପିଲାମାନେ ଅଭିନୟ କରିବେ । କୌଣସି ଗଳ୍ପ ବା ବିଷୟର ଭାବକୁ କାର୍ଯ୍ୟରେ ଅବିକଳ ପ୍ରକାଶ କରିବାକୁ

ଅଭିନୟ କହନ୍ତି । ପୁସ୍ତକରେ ପିଲାମାନେ ଯେ ଯେ ବି-
ପଢ଼ନ୍ତି ସେ ବିଷୟଗୁଡ଼ିକ କାର୍ଯ୍ୟରେ ଦେଖାଇଲେ ତାହାର
ପ୍ରକୃତ ଭାବ ଓ ମର୍ମ ପିଲାମାନଙ୍କ ମନରେ ଦୃଢ଼ୀଭୂତ ହୁଏ ଓ
ତାହା ସେମାନେ କେବେ ଭୁଲିଯାଇ ପାରନ୍ତି ନାହିଁ । ମୁଁ
ଆଦର୍ଶସ୍ୱରୂପ ଏହିପରି କେତେଗୁଡ଼ିଏ ଗୀତ ଲେଖିଅଛି ।
ଯେତେଦୂର ସମ୍ଭବ ଏହି ଗୀତଗୁଡ଼ିକ ମଧ୍ୟରେ ଥିବା
ଅଙ୍କନୋପଯୋଗୀ ଛବିଗୁଡ଼ିକ ଶିକ୍ଷକ କଳାପଟାରେ
(ବୋର୍ଡ଼ରେ) ଅଙ୍କନ କରିଦେବେ ଓ ଶିଶୁମାନେ ମଧ୍ୟ
ସେହିପରି ଶ୍ଳେଟରେ ଚିତ୍ର କରିବେ । ତାହା ହେଲେ ପିଲା-
ମାନଙ୍କର ଅଧିକ ଉପକାର ହେବ । ଗୀତଗୁଡ଼ିକ ଯେତେଦୂର
ସମ୍ଭବ ସରଳ ଓ ଗ୍ରାମ୍ୟ ଭାଷାରେ ଲେଖାଯାଇଅଛି । ତହିଁରେ
ଥିବା କଠିନ୨ ଶବ୍ଦମାନଙ୍କର ଅର୍ଥ ଶିକ୍ଷକ ପିଲାମାନଙ୍କୁ ଆଗେ
ବୁଝାଇଦେବେ ଓ ସେମାନେ ଯେପରି ଗୀତର ସମସ୍ତ ବିଷୟ
ବୁଝି ଗୀତ ମୁଖସ୍ଥ କରନ୍ତି ଶିକ୍ଷକ ତହିଁପ୍ରତି ଦୃଷ୍ଟି ରଖିବେ ।
ଶିକ୍ଷକ ପ୍ରଥମେ ଗୀତଗୁଡ଼ିକ ସ୍ପଷ୍ଟରୂପେ ପଢ଼ି ପିଲାମାନଙ୍କୁ
ସେହିପରି ପଢ଼ାଇ କଣ୍ଠସ୍ଥ କରାଇବେ । ଅର୍ଥ ନ ବୁଝି ଓ
ଯେ ସ୍ଥାନରେ ଯେପରି କାର୍ଯ୍ୟ କରିବାର ଆବଶ୍ୟକ ତାହା
ନ କରି କେବଳ ଗୀତ ମୁଖସ୍ଥ କରାଇଲେ ତହିଁରେ ବିଶେଷ
କିଛି ଉପକାର ହେବ ନାହିଁ । ଗୀତ ଗାଇଁ୨ ଯଦି ତହିଁରେ
ପିଲାମାନଙ୍କର କୌତୁକ ଓ ଆନନ୍ଦ ଜାତ ନ ହେବ ତେବେ
ଏହିପରି ଗୀତ ଶିଶୁଖେଳାର ଉପଯୋଗୀ ହେବ ନାହିଁ ।
ଅତଏବ ଆଶାକରେଁ ପାଠଶାଳାଶିକ୍ଷକମାନେ ଉପରୋକ୍ତ
ବିଷୟଗୁଡ଼ିକ ପ୍ରତି ମନୋଯୋଗୀ ହୋଇ ଗୀତ ମୁଖସ୍ଥ କରା-
ଇଲେ ମୁଁ ମୋହର ପରିଶ୍ରମ ସଫଳ ଜ୍ଞାନ କରିବି । ଭକ୍ତିଭାଜନ

ଓଡ଼ିଶାର ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ଓ ଶିଶୁମାନଙ୍କର ତଦ୍ଵାରା ଅବଶ୍ୟ ଉପକାର ହୋଇପାରିବ । ଏହି ଗୀତଗୁଡ଼ିକ ଚାରି ଭାଗରେ ବିଭକ୍ତ କରାଯାଇଅଛି । ଯଥା ;—

୧ମ ଭାଗ—ରେଖା, ବର୍ଣ୍ଣ, ପଦାର୍ଥ ଓ ଇନ୍ଦ୍ରିୟ ସମ୍ବନ୍ଧୀୟ ଗୀତ ।

୨ୟ ଭାଗ—ପରିଶ୍ରମର ମାହାତ୍ମ୍ୟଶିକ୍ଷାବିଷୟକ ଗୀତ । ଲୋକେ ଆପଣା ବ୍ୟବସାୟ ଛାଡ଼ି ଅନ୍ୟ ବ୍ୟବସାୟ କରିବାକୁ ଘୃଣା ପ୍ରକାଶ କରନ୍ତି । ଏହି ଭ୍ରମ ପିଲାମାନଙ୍କ ମନରୁ ଦୂର କରିବା ଏହି ଗୀତମାନଙ୍କର ଉଦ୍ଦେଶ୍ୟ । କେବଳ ପାଞ୍ଚଗୋଟି ଗୀତ ଆଦର୍ଶ-ସ୍ଵରୂପ ଦିଆଯାଇଅଛି, ଶିକ୍ଷକମାନେ ସେହିପରି ଅନ୍ୟାନ୍ୟ ବ୍ୟବସାୟ ସମ୍ବନ୍ଧରେ ଗୀତ ଲେଖି ଶିକ୍ଷା ଦେଇପାରିବେ ଓ ପରିଶ୍ରମର ମାହାତ୍ମ୍ୟ ବୁଝାଇଦେବେ ।

୩ୟ ଭାଗ—କର୍ମ୍ମସଙ୍ଗୀତ । ପିଲାମାନେ ଏହି ଗୀତଗୁଡ଼ିକ ଗାନ କରୁ କରୁ ହସ୍ତପଦାଦି ଚାଳନ କରିବେ । ତଦ୍ଵାରା ସେମାନଙ୍କର ଶାରୀରିକ ଉନ୍ନତି ସଙ୍ଗେ ସଙ୍ଗେ ଅନ୍ୟ ବିଷୟର ଶିକ୍ଷା ହେବ ଓ ସେମାନଙ୍କ ମନରେ ବିଶେଷ ଆନନ୍ଦ ଜାତ ହେବ । ଗୀତର ଯେଉଁ ସ୍ଥାନରେ ଯେପରି ଭାବରେ ଲେଖାଅଛି ତଦନୁସାରେ ହସ୍ତପଦାଦି ଚାଳନ କରିବାକୁ ଶିକ୍ଷକ ପିଲାମାନଙ୍କୁ ଶିକ୍ଷା-ଦେବେ । ପ୍ରଥମ ଭାଗରେ ଇନ୍ଦ୍ରିୟସମ୍ବନ୍ଧୀୟ ଗୀତଗୁଡ଼ିକ ମଧ୍ୟ କର୍ମ୍ମଗୀତରୂପେ ବ୍ୟବହୃତ ହୋଇପାରେ ।

୪ର୍ଥ ଭାଗ—ଅଭିନୟ ବା ଖେଳଗୀତ । ଏହି ଗୀତଗୁଡ଼ିକ ଗାଇବା ସଙ୍ଗେ ସଙ୍ଗେ ପିଲାମାନେ ଅଭିନୟ କରିବେ । କୌଣସି ଗଳ୍ପ ବା ବିଷୟର ଭାବକୁ କାର୍ଯ୍ୟରେ ଅବିକଳ ପ୍ରକାଶ କରିବାକୁ

ଅଭିନୟ କରନ୍ତୁ । ପୁସ୍ତକରେ ପିଲ୍ଲମାନେ ଯେ ଯେ ବିଷୟ ପଢ଼ନ୍ତି ସେ ବିଷୟଗୁଡ଼ିକ କାର୍ଯ୍ୟରେ ଦେଖାଇଲେ ତାହାର ପ୍ରକୃତ ଭାବ ଓ ମର୍ମ ପିଲ୍ଲମାନଙ୍କ ମନରେ ଦୃଢ଼ୀଭୂତ ହୁଏ ଓ ତାହା ସେମାନେ କେବେ ଭୁଲିଯାଇ ପାରନ୍ତି ନାହିଁ । ମୁଁ ଆଦର୍ଶସ୍ୱରୂପ ଏହିପରି କେତେଗୁଡ଼ିଏ ଗୀତ ଲେଖିଅଛି । ଯେତେଦୂର ସମ୍ଭବ ଏହି ଗୀତଗୁଡ଼ିକ ମଧ୍ୟରେ ଥିବା ଅଙ୍କନୋପଯୋଗୀ ଛବିଗୁଡ଼ିକ ଶିକ୍ଷକ କଳାପଟାରେ (ବୋର୍ଡ଼ରେ) ଅଙ୍କନ କରିଦେବେ ଓ ଶିଶୁମାନେ ମଧ୍ୟ ସେହିପରି ସ୍ଲେଟରେ ଚିତ୍ର କରିବେ । ତାହା ହେଲେ ପିଲ୍ଲ-ମାନଙ୍କର ଅଦ୍ଭୁତ ଉପକାର ହେବ । ଗୀତଗୁଡ଼ିକ ଯେତେଦୂର ସମ୍ଭବ ସରଳ ଓ ଗ୍ରାମ୍ୟ ଭାଷାରେ ଲେଖାଯାଇଅଛି । ତହିଁରେ ଥିବା କଠିନ ୨ ଶବ୍ଦମାନଙ୍କର ଅର୍ଥ ଶିକ୍ଷକ ପିଲ୍ଲମାନଙ୍କୁ ଆଗେ ବୁଝାଇଦେବେ ଓ ସେମାନେ ଯେପରି ଗୀତର ସମସ୍ତ ବିଷୟ ବୁଝି ଗୀତ ମୁଖସ୍ଥ କରନ୍ତି ଶିକ୍ଷକ ତହିଁପ୍ରତି ଦୃଷ୍ଟି ରଖିବେ । ଶିକ୍ଷକ ପ୍ରଥମେ ଗୀତଗୁଡ଼ିକ ସ୍ପଷ୍ଟରୂପେ ପଢ଼ି ପିଲ୍ଲମାନଙ୍କୁ ସେହିପରି ପଢ଼ାଇ କଣ୍ଠସ୍ଥ କରାଇବେ । ଅର୍ଥ ନ ବୁଝି ଓ ଯେ ସ୍ଥାନରେ ଯେପରି କାର୍ଯ୍ୟ କରିବାର ଆବଶ୍ୟକ ତାହା ନ କରି କେବଳ ଗୀତ ମୁଖସ୍ଥ କରାଇଲେ ତହିଁରେ ବିଶେଷ କିଛି ଉପକାର ହେବ ନାହିଁ । ଗୀତ ଗାଇ ୨ ଯଦି ତହିଁରେ ପିଲ୍ଲମାନଙ୍କର କୌତୁକ ଓ ଆନନ୍ଦ ଜାତ ନ ହେବ ତେବେ ସେପରି ଗୀତ ଶିଶୁଖେଳାର ଉପଯୋଗୀ ହେବ ନାହିଁ । ଅତଏବ ଆଶାକରେଁ ପାଠଶାଳାଶିକ୍ଷକମାନେ ଉପରୋକ୍ତ ବିଷୟଗୁଡ଼ିକ ପ୍ରତି ମନୋଯୋଗୀ ହୋଇ ଗୀତ ମୁଖସ୍ଥ କରା-ଇଲେ ମୁଁ ମୋହର ପରିଶ୍ରମ ସଫଳ ଜ୍ଞାନ କରିବି । ଭକ୍ତିଭାଜନ

ପୂଜ୍ୟପାଦ ଶ୍ରୀମାନ୍ ରାୟ୍ ମଧୁସୂଦନ ରାଓ ବାହାଦୁର ମହୋଦୟ ମୋହର ଏହି ଗୀତଗୁଡ଼ିକ ଆଦ୍ୟୋପାନ୍ତ ପାଠ କରି ସ୍ଥାନେ୨ ସଂଶୋଧନ କରିଦେଇଥିବାରୁ ମୁଁ ସେହି ମହାତ୍ମାଙ୍କଠାରେ ମୋର ଆନ୍ତରିକ କୃତଜ୍ଞତା ପ୍ରକାଶ କରୁଅଛି । ଇତି ।

ଅନଗୁଳ }
ତା }

ଶ୍ରୀନବାସ ସିଂହ ।

## ତୃତୀୟ ସଂସ୍କରଣର

# ଭୂମିକା ।

—o—

ମୋହର ପ୍ରଣୀତ "ଶିଶୁଖେଳା-ଗୀତ" ଓଡ଼ିଶାର ପ୍ରାଥମିକ ବିଦ୍ୟାଳୟମାନଙ୍କରେ ବହୁଳ ପ୍ରଚଳନ ଯୋଗୁଁ ମୁଁ ବିଶେଷ ପ୍ରୀତ ହୋଇ ଏହି ପୁସ୍ତକର ପୁନଃମୁଦ୍ରଣ ବିଷୟରେ ପ୍ରୟାସୀ ହେଲି । ଓଡ଼ିଶା ସ୍କୁଲସମୂହର ମାନନୀୟ ଇନ୍‌ସ୍ପେକ୍ଟର ଶ୍ରୀଯୁକ୍ତ ଜେ. ମ୍ୟାକ୍‌ଲିନ୍ ସାହେବ ମହୋଦୟ ଏ ପୁସ୍ତିକାନ୍ତର୍ଗତ ଗୀତମାନଙ୍କ ସମ୍ବନ୍ଧରେ ଯେଉଁ ଅନୁକୂଳ ମତ ପ୍ରକାଶ କରିଅଛନ୍ତି ତାହା ଏଥିରେ ସନ୍ନିବିଷ୍ଟ ହେଲା । ସେଥିପାଇଁ ମୁଁ ସେହି ମହାତ୍ମାଙ୍କଠାରେ ମୋହର ହୃଦୟର କୃତଜ୍ଞତା ପ୍ରକାଶ କରୁଅଛି । ସେ ମହୋଦୟ ସମସ୍ତ ସ୍କୁଲମାନଙ୍କରେ ଗୀତଗୁଡ଼ିକର ଉପଯୁକ୍ତ ଅଭିନୟ ଏକପ୍ରକାରରେ ନ ହେଉଥିବାର ଦେଖି ପ୍ରତ୍ୟେକ କର୍ମଗୀତର ଶେଷରେ ଯଥୋଚିତ ଅଙ୍ଗଚାଳନାର ଆବଶ୍ୟକୀୟ ଉପଦେଶମାନ ସନ୍ନିବେଶ କରିବାପାଇଁ ଇଚ୍ଛା ପ୍ରକାଶ କରିଥିବାରୁ ସେଗୁଡ଼ିକ ପୁସ୍ତକର ଶେଷରେ ପରିଶିଷ୍ଟରୂପେ ସନ୍ନିବିଷ୍ଟ ହେଲା । ଶିକ୍ଷକମାନଙ୍କୁ ଅନୁରୋଧ ଯେ କର୍ମଗୀତଗୁଡ଼ିକ ଶିକ୍ଷାଦେବା ସମୟରେ ଏହି ଉପଦେଶଗୁଡ଼ିକ ପ୍ରତି ଦୃଷ୍ଟି ରଖି ଅଙ୍ଗଚାଳନା କରାଇବେ ଏବଂ ଅଙ୍ଗଚାଳନା ସମୟରେ ପିଲାମାନଙ୍କ ହସ୍ତପଦଗୁଡ଼ିକ ଯେପରି ଜୋର ସହିତ ଚାଳିତ ହୁଏ ତତ୍ପ୍ରତି ମନୋଯୋଗୀ ହେବେ ।

ପିଲାମାନଙ୍କୁ ପୃଥକ୍ ପୃଥକ୍ ଛିଡ଼ା କରାଇ ନିମ୍ନୋକ୍ତ ଉପଦେଶମତେ କର୍ମଗୀତଗୁଡ଼ିକ ଶିକ୍ଷା ଦେବାକୁ ହେବ ।

ଅଦେଶ　　　　　　　　କାର୍ଯ୍ୟ

୧ । Ready (ରେଡ଼ି) ଏହି ଅଦେଶ ଉଚ୍ଚାରଣମାତ୍ରେ ପିଲାମାନେ ନିଜନିଜର ବହିପତ୍ର ଛାଡ଼ି ଖେଳ ପଡ଼ିଆରେ ଏକତ୍ରିତ ହେବେ ଓ ଲୁଗାପଟା ସଜାଡ଼ି ଛିଡ଼ା ହେବେ ।

୨ । Extend (ଏକ୍ସଟେଣ୍ଡ) ଏହି ଅଦେଶ ପାଇଲେ ପିଲାମାନେ ହାତକୁ ହାତ ଯଥାଯଥ ହୋଇ ପ୍ରଥମ ପିଲାଠାରୁ କ୍ରମେ କ୍ରମେ ଘୁଞ୍ଚିଯିବେ । (ଜ୧୦ଣରୁ ଅଧିକ ଛାତ୍ର ଥିଲେ ଜଣକ ପରେ ଜଣେ ଆଗକୁ କିମ୍ବା ପଛକୁ ହଟିଯିବା ପାଇଁ ଶିକ୍ଷକ ଆଦେଶ ଦେବେ । ୨୦ ଜଣରେ ଦୁଇ ଧାଡ଼ି, ୩୦ ଜଣରେ ତିନି ଧାଡ଼ି ଏହିପରି ଆଗପଛ ହୋଇ ଠିଆ ହେବେ । ତାହାହେଲେ ପିଲାମାନଙ୍କର ସମାନଭାବରେ ଅଙ୍ଗଚାଳନା ପ୍ରତି ଶିକ୍ଷକଙ୍କ ଦୃଷ୍ଟି ରହିବ । ଏହିପରି ଛିଡ଼ା କରାଇଲେ ପିଲାମାନେ ନିଜେ୨ ଛିଡ଼ା ଛିଡ଼ା ହୋଇ ଠିଆ ହେବେ ଓ ଏକ୍ସଟେଣ୍ଡ ଆଦେଶ ଦେବାକୁ ହେବ ନାହିଁ ।)

୩ । Attention (ଆଟେନ୍‌ସନ୍) ଏ ଆଦେଶ ପାଇଲେ ପିଲାମାନେ ହାତ ଛଡ଼ାଛଡ଼ି ହୋଇ ସ୍ଥିରଭାବରେ ଛିଡ଼ା ହେବେ ।

୪ । ଏହା ଉତ୍ତାରୁ ଯେଉଁ ଗୀତ ଗାଇବାକୁ ହେବ ଶିକ୍ଷକ ସେ ଗୀତର ନାମ ଉଚ୍ଚାରଣ କରିବାମାତ୍ରେ ପିଲାମାନେ ~~[illegible]~~ ଗାନ ଆରମ୍ଭ କରିବେ ।

ଅନୁଗୁଳ,
ତା ୮-୮-୧୯୧୪ ।

ଶ୍ରୀନିବାସ ସିଂହ ।

I have gone through these Kindergarten Songs heard some of them recited in schools. They have been written in easy and popular style and the subjects dealt with are such as have reference to the child's daily environment. The songs are in every respect quite suitable for the purpose intended, namely, to arouse in the child a thirst for knowledge and to give him a many-sided interest. I heartily commend the book to the kind notice of the authorities.

Madhusudan Ráo,
Late Inspector of Schools,
4-11-09.

---

Babu Srinibas Singh, Deputy Inspector of Schools Angul, has done a great service to Primary education in Orissa in composing his little book of Kindergarten Songs. I have heard the songs sung in many schools: in idea they are simple and artistic. When sung and acted properly they are very pleasing to witness. They help to make the first stage of school life interesting to little children and are quite in accordance with modern ideas of kindergarten work.

Bantla,
The 6th December,
1912.

J. MacLean,
Inspector of Schools,
Orissa Division.

| ଆଦେଶ | କାର୍ଯ୍ୟ |
|---|---|
| ୧ । Ready (ରେଡ଼ି) | ଏହି ଆଦେଶ ଉଚ୍ଚାରଣମାତ୍ରେ ପିଲାମାନେ ନିଜନିଜର ବହିପତ୍ର ଛାଡ଼ି ଖେଳ ପଡ଼ିଆରେ ଏକତ୍ରିତ ହେବେ ଓ ଲୁଗାପଟା ସଜାଡ଼ି ଛିଡ଼ା ହେବେ । |
| ୨ । Extend (ଏକ୍ସଟେଣ୍ଡ) | ଏହି ଆଦେଶ ପାଇଲେ ପିଲାମାନେ ହାତକୁହାତ ଧରାଧରି ହୋଇ ପ୍ରଥମ ପିଲାଠାରୁ କ୍ରମେ କ୍ରମେ ଘୁଞ୍ଚିଯିବେ । (ଜଣ୧୦ଣରୁ ଅଧିକ ଛାତ୍ର ଥିଲେ ଜଣକ ପରେ ଜଣେ ଆଗକୁ କମ୍ପା ପଛକୁ ହଟିଯିବା ପାଇଁ ଶିକ୍ଷକ ଆଦେଶ ଦେବେ । ୨୦ ଜଣରେ ଦୁଇ ଧାଡ଼ି, ୩୦ ଜଣରେ ତିନି ଧାଡ଼ି ଏହିପରି ଆଗପଛ ହୋଇ ଠିଆ ହେବେ । ତାହାହେଲେ ପିଲାମାନଙ୍କର ସମାନଭାବରେ ଅଙ୍ଗଚାଳନା ପ୍ରତି ଶିକ୍ଷକଙ୍କ ଦୃଷ୍ଟି ରହିବ । ଏହିପରି ଛିଡ଼ା କରାଇଲେ ପିଲାମାନେ ନିଜେ୨ ଛଡ଼ା ଛଡ଼ା ହୋଇ ଠିଆ ହେବେ ଓ ଏକ୍ସଟେଣ୍ଡ ଆଦେଶ ଦେବାକୁ ହେବ ନାହିଁ ।) |
| ୩ । Attention (ଆଟେନ୍‌ସନ୍‌) | ଏ ଆଦେଶ ପାଇଲେ ପିଲାମାନେ ହାତ ଛଡ଼ାଛଡ଼ି ହୋଇ ସ୍ଥିରଭାବରେ ଛିଡ଼ା ହେବେ । |

୪ । ଏହା ଉତ୍ତାରୁ ଯେଉଁ ଗୀତ ଗାଇବାକୁ ହେବ ଶିକ୍ଷକ ସେ ଗୀତର ନାମ ଉଚ୍ଚାରଣ କରିବାମାତ୍ରେ ପିଲାମାନେ [redacted] ଗାନ ଆରମ୍ଭ କରିବେ ।

ଅନୁଗୁଳ,
ତା ୮-୮-୧୯୧୪ । } ଶ୍ରୀନିବାସ ସିଂହ ।

I have gone through these Kindergarten Songs and heard some of them recited in schools. They have been written in easy and popular style and the subjects dealt with are such as have reference to the child's daily environment. The songs are in every respect quite suitable for the purpose intended, namely, to arouse in the child a thirst for knowledge and to give him a many-sided interest. I heartily commend the book to the kind notice of the authorities.

Madhusudan Ráo,
Late Inspector of Schools,
4-11-09.

---

Babu Srinibas Singh, Deputy Inspector of Schools Angul, has done a great service to Primary education in Orissa in composing his little book of Kindergarten Songs. I have heard the songs sung in many schools: in idea they are simple and artistic. When sung and acted properly they are very pleasing to witness. They help to make the first stage of school life interesting to little children and are quite in accordance with modern ideas of kindergarten work.

Bantla,
The 6th December,
1912.

J. MACLEAN,
Inspector of Schools,
Orissa Division.

It gives me great pleasure to recommend "Sishu khela Gita" (Kindergarten Songs) by Babu Srinibas Singh, for the teaching of Action Songs in Primary Schools.

The Songs are written in simple language, and the subjects are such as are familiar and appeal to all children. The actions are well suited to give ample exercise to young children who are not taught Drill.

The book is now being largely used, and I feel sure its further use will be very helpful.

Sd. A. G. HEEFKE,

Cuttack, October 11th, 1916.

Additional Inspector of Schools, Angul and Orissa Feudatory States.

# ସୂଚୀପତ୍ର ।

—•—

# ଶିଶୁ ଖେଳା-ଗୀତ ।



## ପ୍ରଥମ ଭାଗ—ରେଖା, ବର୍ଣ୍ଣ, ପଦାର୍ଥ ଓ ଇନ୍ଦ୍ରିୟ ସମ୍ବନ୍ଧୀୟ ଗୀତ ।

---

### ବକ୍ର (ବଙ୍କା) ।

ବଙ୍କା ବଙ୍କା ଦେଖ ଲତା   ଗଛେ ଯାଏ ମାଡ଼ି,
ସେହିପରି ବଙ୍କା ଦେଖ   ଏହି ମୋର ବାଡ଼ି ।
ଦ୍ୱିତୀୟା ତୃତୀୟା ଜହ୍ନ   ଦିଶଇ ଯେପରି,
ଅଗସ୍ତି କୁସୁମ କଳି   ବଙ୍କା ସେହିପରି ।
ବର୍ଷାକାଳେ ସୂର୍ଯ୍ୟମୁଖେ   ବଙ୍କା ଇନ୍ଦ୍ରଧନୁ,
ଯା ଶୋଭା ଦେଖିଲେ ଥରେ   ନ ଯିବଇ ମନୁ ।
ହସ କଉତୁକେ ଆସ   ସମସ୍ତେ ଖେଳିବା,
ବଙ୍କାଇ ବଙ୍କାଇ ଗୀତ   ସମସ୍ତେ ଗାଇବା ।

---

### ସରଳ (ସଳଖ) ।

ସମ୍ମୁଖେ ଓଳମ ଦେଖ   ରହିଛି ଓହ୍ଳଇ,
ଉଭା ହୋଇ ରହିଅଛି   ସରଳ କପଇ ।
ଦେଖ କେତେ ତାଳଗଛ   ସେହି ତାଳବନେ,
ରହିଛି ସଳଖ ହୋଇ   ଦେଖ ହେ ନୟନେ ।
ଶରବନେ ଗଲ ମୁହିଁ   ଗଲ ଶର ହାଣି,
କେମନ୍ତ ସଳଖ ଶର   ମୁହିଁ ଅଛି ଆଣି ।

ହସ୍ତେ ଧନୁ ଧରି ତହିଁ   ଶର ମୁଁ ଖଞ୍ଜିଲି,
ଲକ୍ଷ୍ୟ ସ୍ଥିର କରି ବେଗେ   ଶର ମୁଁ ବନ୍ଧିଲି ।
ସଲଖେ ସଲଖେ ଦେଖ   ଶର ଚାଲିଗଲା,
ଙ୍କ ବେଗରେ ଯାଇ ଶର   ଲକ୍ଷ୍ୟକୁ ଭେଦିଲା ।
ପଢ଼ା ଶେଷେ ଅବଧାନେ   ଯେବେ ଦେବେ ଛୁଟି,
ସଲଖିଣ ଠିଆ ହେବା   ହୋଇ ଏକ ଧାଡ଼ି ।
ତାଙ୍କୁ ନମସ୍କାର କରି   ପୋଥି ଧରି କରେ,
ଆଗ ପଛ ହୋଇ ଯିବା   ଯେ ଯାହାର ଘରେ ।

---

## ଗୋଲିଖେଳ ।

## ବର୍ଣ୍ଣଶିକ୍ଷା ।

---

ହରିନାଥ—

ଲାଲରଙ୍ଗ ଗୋଲି ମୋର   ରକ୍ତବର୍ଣ୍ଣ ତାର,
ମନ୍ଦାରଫୁଲର ରଙ୍ଗ   ଦିଶେ ଯେ ପ୍ରକାର ।
ଏ ଗୋଲିରେ ଖେଳିବି ମୁଁ   ମାରି ଠାଇ ଠାଇ,
କେଡ଼େ ଲାଲ ଗୋଲି ମୋର   ଦେଖ ଦେଖ ଭାଇ । ୧ ।

ରାମଚନ୍ଦ୍ର—

ହଳଦିପରି ହଳଦିଆ   ଏ ଗୋଲି ମୋହର,
ସେ ଉଷକୁସୁମ ପରି   ଦିଶେ କି ସୁନ୍ଦର ।
ଏ ଗୋଲିରେ ସବୁ ଗୋଲି   ଦେବି ମୁଁ ଉଠାଇ ;
ହଳଦିଆ ଗୋଲି ମୋର   ଦେଖ ଦେଖ ଭାଇ । ୨ ।

କରୁଣାକର—

ନୀଳରଙ୍ଗ ଗୋଲି ମୋର   କି ସୁନ୍ଦର ଅହା,
ନୀଳକଇଁ ପରି ନୀଳ   ଦିଶେ କେଡ଼େ ସୁହାଁ ।
ଏହି ନୀଳ ଗୋଲି ନେଇ   ଖେଳିବି ମୁଁ ଯାଇ,
ନେଳିଆ ଗୋଲିଟି ମୋର   ଦେଖ ଦେଖ ଭାଇ । ୩ ।

ଦାମୋଦର—

ନାରଙ୍ଗୀରଙ୍ଗ ମୋ ଗୋଲି   ଅଟଇ ସୁନ୍ଦର,
ପାଚିଲା କମଳା ରଙ୍ଗ   କେଡ଼େ ମନୋହର ।
ଏ ରଙ୍ଗର ଗୋଲି ଆଉ   କାହାରି ତ ନାହିଁ,
କି ସୁନ୍ଦର ଗୋଲି ମୋର   ଦେଖ ଦେଖ ଭାଇ । ୪ ।

କଲ୍ୟାଣ—

ବାଇଗଣୀରଙ୍ଗ ଗୋଲି   ମୋହର ଅଟଇ,
ଗଜା ଅମୃପଏ ପରି   ତା ରଙ୍ଗ ଦିଶଇ ।
ଏପରି ସୁନ୍ଦର ଗୋଲି   କେହି ଆଣି ନାହିଁ,
କି ସୁନ୍ଦର ଗୋଲି ମୋର   ଦେଖ ଦେଖ ଭାଇ । ୫ ।

ଗୋପାଳ—

[illegible]ରଙ୍ଗ ଗୋଲି ମୋର   କେଡ଼େ ଚମତ୍କାର,
ଦୁବଘାସ ପରି ରଙ୍ଗ   ଅଟଇ ତାହାର ।
ଏ ଗୋଲିଟି ବାପା ଦେଇ—ଅଛନ୍ତି ଆଣାଇଁ,
କି ସୁନ୍ଦର ଗୋଲି ମୋର   ଦେଖ ଦେଖ ଭାଇ । ୬ ।

ସମସ୍ତ ବାଳକ—

ବେଗେ ବେଗେ ଆସ ଭାଇ   ଗୋଲ୍ ଖେଳି ଯିବା,
ଖେଳ ପଡ଼ିଆରେ ଯାଇ   ସମସ୍ତେ ମିଳିବା ।
ଅବଧାନେ ଡାକୁଛନ୍ତି   ଖେଳ ପଡ଼ିଆରେ,
ଦଳ ଦଳ ହୋଇ ଚାଲ   ମିଳିବା ସେଠାରେ । ୭ ।
ରକ୍ତ, ପୀତ, ନୀଳ ଗୋଲ୍   ହେବା ଏକଦଳ,
ଶ୍ୟାମ, ନାରଙ୍ଗୀ, ବାଇଗଣୀ   ହେବା ଅନ୍ୟଦଳ ।
ଆନନ୍ଦରେ ଦୁଇଦଳ   ସାରି ଗୋଲ୍‌ଖେଳ,
ଚାଲ ହେ ଘରକୁ ଯିବା   ଥାଉଁ ଥାଉଁ ବେଳ । ୮ ।

---

ରାଣୀଖେଳ—ବର୍ଣ୍ଣଶିକ୍ଷା (ବାଳିକାମାନଙ୍କ ନିମିତ୍ତ) ।

ସୁଶୀଳା—

ଲାଲରଙ୍ଗ ମାଳ ମୋର   ରକ୍ତବର୍ଣ୍ଣ ତାର,
ମନ୍ଦାରଫୁଲର ରଙ୍ଗ   ଦିଶେ ଯେ ପ୍ରକାର ।
ଏହି ଲାଲ ମାଳହାର   ଗଳାରେ ଲମ୍ବାଇ,
ରାଣୀଖେଳେ ମହାନନ୍ଦେ   ରାଣୀ ହେବ ଯାଇ ।

ଧର୍ମୀଳା—

ହଳଦି ପରି ହଳଦିଆ   ଏ ମାଳ ମୋହର,
ସୋରିଷକୁସୁମ ପରି   ଦିଶେ କି ସୁନ୍ଦର ।
ଏ ହଳଦି ମାଳହାର   ଗଳାରେ ଲମ୍ବାଇ,
ରାଣୀଖେଳେ ମହାନନ୍ଦେ ନାଚିବି ମୁଁ ଯାଇ ।

ରେବତୀ—

ନୀଳରଙ୍ଗ ମାଳ ମୋର   କେଡ଼େ ନୀଳ ଅହା,
ନୀଳକଇଁ ପତ୍ର ନୀଳ   ଦଣ୍ଡେ କେଡ଼େ ଶୋହା ।
ଏହି ନୀଳ ମାଳହାର   ଗଳାରେ ଲମ୍ବାଇ,
ରାଣୀଖେଳେ ମହାନନ୍ଦେ   ନାଚିବି ମୁଁ ଯାଇ ।

ସତ୍ୟବତୀ—

ନାରଙ୍ଗୀରଙ୍ଗ ମୋ ମାଳ   ଦେଖ କି ସୁନ୍ଦର,
ପାଚିଲା କମଳା ରଙ୍ଗ   କେଡ଼େ ମନୋହର ।
ଏ ନାରଙ୍ଗୀ ମାଳହାର   ଗଳାରେ ଲମ୍ବାଇ,
ରାଣୀଖେଳେ ମହାନନ୍ଦେ   ନାଚିବି ମୁଁ ଯାଇ ।

ପଦ୍ମା—

ଶ୍ୟାମରଙ୍ଗ ମାଳ ମୋର   ଦେଖ ଶ୍ୟାମବର୍ଣ୍ଣ,
ଦୁବଘାସ ପତ୍ର ରଙ୍ଗ ଦିଶଇ ଶୋଭନ ।
ଏହି ଶ୍ୟାମ ମାଳହାର   ଗଳାରେ ଲମ୍ବାଇ,
ରାଣୀଖେଳେ ମହାନନ୍ଦେ   ନାଚିବି ମୁଁ ଯାଇ ।

ସୀତା—

ବାଇଗଣୀ ମାଳ ମୋର   ଦେଖ ଚମତ୍କାର,
ଗଙ୍ଗା ଅମ୍ବୁପଦ୍ମ ରଙ୍ଗ ଅଛଇ ତାହାର ।
ବାଇଗଣୀରଙ୍ଗ ହାର   ଗଳାରେ ଲମ୍ବାଇ,
ରାଣୀଖେଳେ ମହାନନ୍ଦେ   ନାଚିବି ମୁଁ ଯାଇ ।

2

### ସମସ୍ତ ବାଳକା—

ଆସ ଲୋ ଭଗିନୀ ସର୍ବେ   ଆସ ବେଗକରି,
ଛିଡ଼ା ହେବା ଗୋଲ ହୋଇ   ହାତ ଧରାଧରି ।

ମଧ୍ୟେ ରାଣୀ ବଳେ ହେବେ   ଅତି ବଡ଼ ସାଧେ,
ପ୍ରଦକ୍ଷିଣ କରି ତାଙ୍କୁ   ନାଚିବା ଅହ୍ଲାଦେ ।

ନାଚ ନାଚ ନାଚ ନାଚି   ମହା ଆନନ୍ଦରେ,
ରାଣୀଙ୍କ ମଙ୍ଗଳ ଗୀତ   ଗାଇ ଉଚ୍ଚସ୍ୱରେ ।

"ଜୟ ଜୟ ଜୟ ରାଣୀ   ରାଜ୍ୟ-ଅଧୀଶ୍ୱରୀ,
ନାନା ଗୁଣେ ବିଭୂଷିତା   ଅତୁଲ୍ୟ ସୁନ୍ଦରୀ ।

ଜୟ ରାଣୀ ଶବ୍ଦେ ପୃଥ୍ୱୀ   ପଡ଼ୁଛି ଉଛୁଳି,
ମହାନନ୍ଦେ ମିଳି ସର୍ବେ   ଦିଅ ହୁଳାହୁଳି ।"

(ଏହି ଗୀତ ଯାଡ଼ି କିଛିକ୍ଷଣ ଗାଇ ଗାଇ ନାଚିବେ ) ।

ରାଣୀଖେଳ ଶେଷ ହେଲା   ବାହୁଡ଼ିବା ଘରେ,
ବିଭୁନାମ ସ୍ମରି ସର୍ବେ   ମହା ଆନନ୍ଦରେ ।

---

### ମୂଳ ଓ ମିଶ୍ର ବର୍ଣ୍ଣ ।

ରକ୍ତ, ପୀତ, ନୀଳ ତିନି   ଅଟେ ମୂଳ ବର୍ଣ୍ଣ,
ଆଉ ଯେତେ ରଙ୍ଗ ସବୁ   ତହିଁରୁ ଉତ୍ପନ୍ନ ।
ରକ୍ତ, ପୀତ ଦୁଇ ମିଶି   ଦେଖ କି ଛଟାଏ,
ହୋଇଲା ନାରଙ୍ଗୀ ରଙ୍ଗ   ବଡ଼ ଚମତ୍କାର ।
ପୀତ, ନୀଳ ଦୁଇ ରଙ୍ଗ   ମିଶି କି ସୁନ୍ଦର,
ହୋଇଲା ଶ୍ୟାମଳରଙ୍ଗ   ଅତି ମନୋହର ।

ରକ୍ତ ଅଭ ନୀଳ ଦୁଇ  ବର୍ଣ୍ଣର ମିଳନେ,
ବାଇଗଣୀରଙ୍ଗ ହେଲ  ଦେଖ ହେ ଯତନେ ।
ନାରଙ୍ଗୀ ଶ୍ୟାମଳ ବାଇ—ଗଣୀ ମିଶ୍ର ବର୍ଣ୍ଣ,
ହାତେ ହାତେ ପରଖିଣ  ଦେଖ ଶିଶୁଗଣ ।

---

କଠିନ, କୋମଳ, ବନ୍ଧୁର, ଭଙ୍ଗୁର ଓ ଚେମଡ଼ ପଦାର୍ଥ ।

ତୂଳା ମେଞ୍ଚେ ଧରୁଛୁ ମୁଁ  ଲାଗଇ କୋମଳ,
ଏହିପରି ମେଣ୍ଢାରୋମ,  ସ୍ପଞ୍ଜ, ପଟ, ଦଳ ।
ଶିଳାଖଣ୍ଡେ ଧରୁଛୁ ମୁଁ  ଲାଗେ କେଡ଼େ ଟାଣ,
ଏହିପରି କାଠ, ଇଟା,  ସୁନା, ରୂପା ଜାଣ ।
ଶିଲଟରେ ଦେଲି ହାତ  ହାତ ଗଲା ଖସି,
ଏପରି ଚକ୍କଣ ମେଜ  ଦେଖ ହାତ ଘଷି ।
ମାକଡ଼ା ପଥର ଦେଖ  ହାତେ ଅଛୁ ଧରି,
ବନ୍ଧୁର ଅଟଇ ତାହା  ହାତ-ଚମ ପରି ।
ମାଟିହାଣ୍ଡି ହାତୁଁ ପଡ଼ି  ହୁଅଇ ଭଗନ,
ଏପରି ଭଙ୍ଗୁର ଅଟେ  କାଚର ବାସନ ।
ଟିଣଟିନା ଭାଙ୍ଗେ ନାହିଁ  ଚେପା ହୁଏ ମାତ୍ର,
ଏପରି ଚେମଡ଼ ଅଟେ  ପିତ୍ତଳର ପାତ୍ର ।

---

ସ୍ପର୍ଶେନ୍ଦ୍ରିୟ ।

ସମସ୍ତ ଶରୀର ମୋର  ବେଢ଼ିଅଛୁ ଚର୍ମ୍ମ,
ଚର୍ମ୍ମଦ୍ୱାରା ଜଣାଯାଏ  ଶୀତଳ ଗରମ ।

ଖଟରେ ମୁଁ ବସିଗଲି  ଦେହ ମୋ ତାତିଲା,
ଛାୟାତଳେ ଆସିଗଲି  ଶୀତଳ ଲାଗିଲା ।
ଚର୍ମଦ୍ୱାରା ଜାଣେ ମୁହିଁ  ଅଙ୍ଗର ପବନ,
ଚର୍ମ ସ୍ପର୍ଶ କରି ବାୟୁ  ବହେ ଘନ ଘନ ।
ଏହିପରି ଚର୍ମସ୍ପର୍ଶେ  ହୁଏ ବସ୍ତୁଜ୍ଞାନ,
ଚର୍ମ ନାମ ସ୍ପର୍ଶେନ୍ଦ୍ରିୟ  ତେଣୁ ହେଲା ଜାଣ ।

---

ଦର୍ଶନେନ୍ଦ୍ରିୟ—

ଆଖିରେ ମୁଁ ଅନାଇଁଣ  ଦେଖେ ଗୃହ ଅଡ଼ା,
ଗ୍ରାମ, ବନ, ନଦୀ କେତେ  ପର୍ବତ ପାହାଡ଼ ।
ସୂର୍ଯ୍ୟ, ଚନ୍ଦ୍ର ତାରାବଳୀ  ଗଗନେ ଗଗନେ,
ନିତ ନିତ ଦେଖୁଅଛୁଁ  ନୟନେ ନୟନେ ।
ପଦାର୍ଥର ରଙ୍ଗ ବର୍ଣ୍ଣ  ଆକାର ଗଠନ,
ଚକ୍ଷୁଦ୍ୱାରା ନିତ୍ୟ ମୁହିଁ  କରଇଁ ଦର୍ଶନ ।
ଏହିପରି ଚକ୍ଷୁଦ୍ୱାରା  ବସ୍ତୁ ଦେଖାଯାଏ,
ତେଣୁ ଚକ୍ଷୁ ଦର୍ଶନର  ଇନ୍ଦ୍ରିୟ ବୋଲାଏ ।

---

ଶ୍ରବଣେନ୍ଦ୍ରିୟ—

କାନ ମୋତେ ଦେଇଛନ୍ତି  ପ୍ରଭୁ ମହେଶ୍ୱର,
କାନେ ଶୁଣେ ନାନା ଶବ୍ଦ  ନାନାବିଧ ସ୍ୱର ।
ଗୀତ ବାଦ୍ୟ ଧ୍ୱନି ଯେତେ  କାନରେ ଶୁଣଇଁ,
ଉଚ୍ଚ ଶବ୍ଦ ମୃଦୁ ଶବ୍ଦ  କାନରେ ଜାଣଇଁ ।

ହସ-କଉତୁକ-ଧ୍ୱନ ଉତ୍ସବ-ସଙ୍ଗୀତ,
କାନଦ୍ୱାରା ଶୁଣି ମୁହିଁ ହୁଏ ପୁଲକିତ ।
ବିଷାଦ କ୍ରନ୍ଦନ ସ୍ୱର ଦୁଃଖର ଶବଦ,
କାନେ ପଶିଯାଇ ମୋତେ କରଇ ସ୍ତବଧ ।
କର୍ଣ୍ଣଦ୍ୱାରା କେତେ କେତେ ଶବ୍ଦ ଶୁଣାଯାଏ,
ତେଣୁ କର୍ଣ୍ଣ ଶ୍ରବଣର ଇନ୍ଦ୍ରିୟ ବୋଲାଏ ।

---

ଘ୍ରାଣେନ୍ଦ୍ରିୟ—

ନାକ ଦେଇଛନ୍ତି ପ୍ରଭୁ ନିଶ୍ୱାସ ମାରଇଁ,
ନାକଦ୍ୱାରା ନାନା ଗନ୍ଧ ବାସନା ବାରଇଁ ।
ଚମ୍ପା, ଗୋଲାପ ଫୁଲର ମନୋହର ବାସ,
ଆଘ୍ରାଣ କରଇଁ ନାକେ ହୋଇଣ ଉଲ୍ଲାସ ।
ମଳ ମୂତ୍ର ପଚା ସଢ଼ା—ଆଦ ଯେତେ ଦ୍ରବ୍ୟ,
ଆଘ୍ରାଣିଲେ ନାକେ ତାହା ହୁଏ ବଡ଼ ଅବ୍ୟ ।
ଏହିପରି ନାକଦ୍ୱାରା ଗନ୍ଧ ପରଚିତ,
ତେଣୁ ନାକ ଘ୍ରାଣେନ୍ଦ୍ରିୟ ହୁଅଇ କଥିତ ।

---

ରସନେନ୍ଦ୍ରିୟ ।

ସମସ୍ତ ବାଳକ—

ଦେଇଛନ୍ତି ଜିଭ ପ୍ରଭୁ କଥା କହିପାରୁଁ,
ଜିହ୍ୱାଦ୍ୱାରା ପଦାର୍ଥର ରସ ସ୍ୱାଦ ବାରୁଁ ।

ଶ୍ୟାମ—

ପୂର୍ଣ୍ଣିମୀରେ କରିଥିଲେ   ବଡ଼ ବଡ଼ ମଣ୍ଡା,
ମିଠା ମିଠା ଖାଇଦେଲି   ପେଟ ହେଲା ଥଣ୍ଡା ।
ମାମୁଁ ଘର ଯାଇଥିଲି   ଦେଲେ କୋଡେ * ଝଙ୍ଗା,
ଅଧମିଠା ଖାଇଦେଲି   କଣ ବଡ଼ ମଜା ।

ଦାମ—

ଆମ୍ବୁଲ ତେନ୍ତୁଳି ଦେଇ   ରାନ୍ଧିଥିଲେ ଗୁଣ,
ବଡ଼ ଖଟା ଖାଇଦେଲି   ପକାଇଣ ଲୁଣ ।
ଟଭାଗୋଟେ ଲେମ୍ବୁଗୋଟେ   ଖାଇଲି ମୁଁ ଆଣି,
ଖଟା ଖଟା ଲାଗୁଥିଲା   ଜିଭୁଁ ଗଲା ପାଣି ।

ରମ—

ଆମ୍ବ ବାଉଁଆଡ଼େ ଥିଲା   ବୁଢ଼ା ବୁଢ଼ା ଲଙ୍କା,
ମଢ଼ ମଢ଼ ଚୋବାଇଲି   ମୁହଁ କଲି ବଙ୍କା ।
ଜିଭରୁ ବୋହିଲା ଲାଳ   ମୋ ଆଖିରୁ ପାଣି ।
କି ରଗୁଆ ଲଙ୍କା ଅଟେ   କେବେ ନାହିଁ ଜାଣି ।

ମଧୁ—

କଞ୍ଚା କଇଥ ଭାଙ୍ଗି ମୁଁ   ଖାଇଥିଲି ବନେ,
କଷା କଷା ଲାଗୁଥିଲା   ଅଛି ମୋର ମନେ ।
କଞ୍ଚା କେନ୍ଦୁ ଅଁଳା ଲାଗେ   ଯାଇଥିଲି ନଟା,
ଚାଖିଦେଲି କଷା କଷା   ଜିଭ ହେଲା [illegible] ।

କେଶବ—

ମା ମୋର ଝୁଆଇଲେ   ଦନେ ଚରେଇଗୁଡ଼ା,
ଜିଭ, ପାଟି ମୋର ସବୁ   ହୋଇଗଲା ଫିଡ଼ା ।

---

* କୋଷ ଦେଶଜ—ସାଜା ଖଜା ।

ନାମ, କଲର ଖାଇଲ   କହ ତାକୁ ଗୁଣ,
ପିଠା ପିଠା ଲାଗୁଥିଲା   ବଡ଼ ତାର ଗୁଣ ।
ଭୁଇନାଲ ଖାଇଦେଲ   ପିଟାଇ ଲାଗିଲା,
ବଡ଼ ଉପକାରୀ ତାହା   ଜର ମୋ ଛାଡ଼ିଲା ।

ସମସ୍ତ ବାଳକ—

ପଦାର୍ଥର ରସ ସ୍ୱାଦ   ଜଭେ ଜଣାଯାଏ,
ଏ ଜିହ୍ୱା ରସନେନ୍ଦ୍ରିୟ   ତେଣୁଟି ବୋଲାଏ ।

——o——

ଦ୍ୱିତୀୟ ଭାଗ—ପରିଶ୍ରମର ମାହାତ୍ମ୍ୟ-ଶିକ୍ଷାବିଷୟକ ଗୀତ ।

କୃଷକ ।

ବଡ଼ ହେଲେ ମୁହିଁ   କୃଷକ
ଲଙ୍ଗଳ ଧରି ମୁଁ   ହଲ ଚଷିବ । ୧
ନାନାପ୍ରକାର ମୁଁ   ବିହନ ଆଣି,
ବିହନ ବୁଣିବି   ସମୟ ଜାଣି । ୨ ।
ପାଣି ମଡ଼ାଇବ   ଦର୍କାର ବେଳେ,
ପାଣି ପାଇ ଗଛ   ବଢ଼ିବ ହେଲେ । ୩ ।
ଘାସ ବାଛିଦେବ   କରି କମଣ,
[illegible] ବଢ଼ାଇବି   କରି ଯତନ । ୪ ।
ଶସ୍ୟ ପାଚିଗଲେ   କାଟି ଅଣିବ,
ବଡ଼ା ବଡ଼ା କରି   ବାନ୍ଧି ଥୋଇବ । ୫ ।
ଏତ ଯତନରେ   ଶସ୍ୟ ମଳିବ,
ଖରାରେ ଶୁଖାଇ   ପୁଞ୍ଜ ବାନ୍ଧିବ । ୬ ।

ଘରକୁ ନେଇଣ ସମ୍ବାଦ ଦେବ,
ଅତି ସୁଖରେ ମୁଁ ଦିନ କାଟିବ । ୭ ।

---

## ପୁଲିସ୍-ମାନ୍ ।

ବଡ଼ ହୋଇ ଯେବେ ଯୁବକ ହେବ,
ପୁଲିସ-ବିଭାଗେ କର୍ମ୍ମ କରିବ । ୧ ।
ପୁଲିସ ଦଣ୍ଡ ମୁଁ ଧରି ହାତରେ,
ବହୁରେ ପହରା ଦେବ ରାତ୍ରିରେ । ୨ ।
ଘର ଘର କରି ବୁଲିବ ଯାଇ,
ବସ୍ତିବାଲାଙ୍କୁ ମୁଁ ଦେବ ଜଗାଇ । ୩ ।
ଡାକପକାଇବ ବାରକୁ ବାର,
"ହୁସିଆର ହୁସିଆର ଖବରଦାର" । ୪ ।
ଛକ ଛକ ମୁହିଁ ଥିବ ଅନାଇଁ,
ଚୋର ଆସିଗଲେ ଯିବେ ପଳାଇ । ୫ ।
ଅଥବା ଚୋରଙ୍କୁ ଧରିବ ଯାଇ,
ଏକେ ଏକେ ଦେବ ଜେଲ ପଠାଇ । ୬ ।
ପ୍ରାଣପଣେ ମୁହିଁ କର୍ମ୍ମ କରିବ,
ସର୍କାର-ପ୍ରଶଂସା ନିଶ୍ଚେ ପାଇବ । ୭ ।

---

## ପୋଷ୍ଟ-ମାନ୍ ।

ବଡ଼ ହୋଇ ଯେବେ ଯୁବକ ହେବ,
ପୋଷ୍ଟମାନ କାର୍ଯ୍ୟ ମୁହିଁ କରିବ । ୧ ।

ବାକସରୁ କାଢ଼ି ଚିଠି ପତ୍ରକୁ,
ନେଇଯିବି ତାହା ଡାକ-ଘରକୁ । ୨ ।
ଚିଠିପତ୍ର ସବୁ ମୋହର କରି,
ଦେବ ମୁଁ ଯତନେ ବ୍ୟାଗରେ ଭରି । ୩ ।
ମୋ କାର୍ଯ୍ୟରେ ମୁହିଁ ଥିବ ତତ୍ପର,
ଡାକ ଆସିଗଲେ ହେବ ହାଜର । ୪ ।
ବ୍ୟାଗରୁ କାଢ଼ିବ ଚିଠି ପତର,
ମୋହର ମାରିବ ତହିଁ ଉପର । ୫ ।
ଚିଠି ବାଛିଦେବେ ଡାକ ମାଷ୍ଟର,
ବ୍ୟାଗ ଭରି ଚିଠି ହେବ ବାହାର । ୬ ।
ଦ୍ୱାରେ ଦ୍ୱାରେ ମୁହିଁ ଯାଇ ବୁଲିବ,
ବିଲମ୍ବ ନ କରି ଚିଠି ବାଣ୍ଟିବ । ୭ ।

---

ବଢ଼େଇ—

ବଡ଼ ହେଲେ ମୁହିଁ ବଢ଼େଇ ହେବ,
ବଢ଼େଇର କାମ ମୁହିଁ କରିବ । ୧ ।
ଭଲ ଭଲ କାଠ ମୁହିଁ ଆଣିବ,
[illegible]ମ ଜନିଷ ତହିଁ କରିବ । ୨ ।
ଘରଢବ କାଠ କରି ଯତନ,
ରନ୍ଦା ମାରିଦେବ କରି ଚିକ୍କଣ । ୩ ।
ଯତନ କରି ମୁଁ ଗଣ୍ଡି ଭିଡ଼ିବ,
ଉତ୍ତମ ସାମଗ୍ରୀ ମୁହିଁ ଗଢ଼ିବ । ୪ ।

ଭଲ ପଦାର୍ଥର   ବଡ଼ ଆଦର,
ବହୁତ କରିବ   ଲାଭ ମୋହର । ୫ ।
ମନ୍ଦ ଜିନିସ ମୁଁ   କରିବ ନାହିଁ,
ମନୁଷ୍ୟମାନଙ୍କୁ   ଠକିବା ପାଇଁ । ୬ ।
ମନ୍ଦ ଦ୍ରବ୍ୟ ଯଦି   ଥରେ କରିବି,
ଅନ୍ୟ ଥରକୁ ମୁଁ   ଧରାପଡ଼ିବି । ୭ ।

---

## ମାଳୀ ।

ବଡ଼ ହେଲେ   ମୁହିଁ   ମାଳୀ ହୋଇବି,
ସୁନ୍ଦର ବଗିଚା   ମୁହିଁ କରିବି । ୧ ।
ଖୋଳି ଖୋଳି ମାଟି   କରି କିଆରି,
ସମାନ କରିବି   ପକାଇ ସାର । ୨ ।
ଗୃହଅଗ୍ରେ ବାଟ   କରିବି ସିଧା,
ବୁଲିବାକୁ ହେବ   ବଡ଼ ସୁବିଧା । ୩ ।
ପ୍ରତି କିଆରିରେ   ଦେବି ମୁଁ ସାର,
ବୃକ୍ଷମାନଙ୍କର   ଯାହା ଆହାର । ୪ ।
ନାନା ଫୁଲ ଫଳ   ଶାଗ ସବଜି,
ଲଗାଇବି ମୁହିଁ   ସମସ୍ତ ବୁଝି । ୫ ।
ପାଣି ଦେଉଥିବି   କରି ଯତନ,
ଘାସ ବାଛିଦେବି   କରି କମଣ । ୬ ।
ଫୁଲ ଫଳେ ବାଡ଼ି   ଶୋଭା ଦଶିବ,
ଦେଖିଲେ ନୟନ   ତୃପ୍ତ ହୋଇବ । ୭ ।

# ତୃତୀୟ ଭାଗ—କର୍ମ ସଂଗୀତ ।

---

## ଧାନକ୍ଷେତ ।

ଦେଖ ଦେଖ ଧାନକ୍ଷେତ   ଦଶଇ ସୁନ୍ଦର,
ଯାହା ଦେଖି ଆନନ୍ଦତ   ମନ କୃଷକର । ୧ ।

ବର୍ଷା ହେଲେ ଚଷାମାନେ   ଜମିକୁ ଚଷନ୍ତି,
ମଇଦେଇ ଚୃଷମାଟି   ସମାନ କରନ୍ତି । ୨ ।

ଧାନ ବୁଣାହେବ ପୁଣି   ବରଷିଲେ ବାଇ,
ଲଙ୍ଗଳ ଦ୍ୱାରା ମାଟିକୁ   [illegible]ଏ ଅଣ୍ଡା ମାଇ । ୩ ।

ଅଣ୍ଡା ଉପରେ ଧରଣ   ଧାନର ଗଉଣୀ ।
ମୁଠି ମୁଠି ଧାନ ଚଷା   ଦେଇଯାଏ ବୁଣି । ୪ ।

କ୍ରମେ କ୍ରମେ ଧାନବୀଜ   ଗଜା ହୋଇଗଲା,
ପାଣି ପାଇ ଧାନଗଜା   କ୍ରମଶଃ ବଢ଼ିଲା । ୫ ।

ହାତେ ହାତେ ବଢ଼ି ଧାନ   ହୋଇଅଛି ଛଡ଼ା,
ସମୟ ହେଲାଣି ଏବେ   ହୋଇବ ବହୁଡ଼ା । ୬ ।

ହଳକର ଚଷା ଧାନ   ଦେଲା ଉପୁଡ଼ାଇ,
ଉପୁଡ଼ା ଧାନକୁ ପୁଣି   ପୋଢିଲା ସଜାଇ । ୭ ।

ଝୁଲୋଲେ ହେଳଣ ଧାନ   ବଢ଼ଇ ବହନ,
ଘାସ ବାଛୁ ଚଷା ପୁଣି   କରେ ବେଙ୍କଷଣ । ୮ ।

କ୍ରମେ କ୍ରମେ ଧାନଗଛୁଁ   ଧାନ ବାହାରିଲା,
ଗୋଟିଏ ଧାନରୁ ଦେଖ   ବହୁତ ଫଳିଲା । ୯ ।

ପାଚଗଲା ଧାନ ବେଗେ   ଚଷା ଅନନ୍ଦତ,
ନଇଁ ନଇଁ କାଟୁଅଛୁ   ଗାଇ ଗାଇ ଗୀତ । ୧୦ ।
ବଡ଼ା ବଡ଼ା ବାନ୍ଧି ଧାନ   ଖଳାକୁ ବୋହିଲା,
ଯତନେ କଳାଇ କରି   ଖଳାରେ ଥୋଇଲା । ୧୧ ।
ଦାଉଣି ବଳଦେ ଧାନ   ବେଙ୍ଗଲା କରିଲା,
କ୍ରମେ କ୍ରମେ ଧାନ ସବୁ   ମଳିପକାଇଲା । ୧୨ ।
ବେଣୀ ବେଣୀ * କରି ଧାନ   ଦେଖ ଗଦା ମାଡ଼ି,
କୁଲାର ପବନେ ଦେଖ   ଉଡ଼ାଇ ଅଗାଡ଼ି । ୧୩ ।
ଖରାରେ ଶୁଖାଇ ଧାନ   ମାପିପକାଇଲା,
ଫୁଡୁଗ ଫୁଡୁଗ † ବାନ୍ଧି   ଯତନେ ଥୋଇଲା । ୧୪ ।
ଏହିପରି ଚଷା ଧାନ   ଅମଳ କରନ୍ତି,
ଆପଣା ଜୀବନ ପାଇଁ   ପରକୁ ପୋଷନ୍ତି । ୧୫ ।
ତେଣୁ ଚଷା ହିତ-କାରୀ   ଅଟେ ପୃଥିବୀର,
ରକ୍ଷ କରି ପାଳୁଅଛି   ମାନବ ଶରୀର । ୧୬ ।
ଧନ୍ୟ ଧନ୍ୟ ଧନ୍ୟ ପ୍ରଭୁ   ମହିମା ତୁମ୍ଭର,
ଦୟା କରି ରଖୁଅଛ   ଜୀବନ ଆମ୍ଭର । ୧୭ ।
ତୁମ୍ଭ ଅନ୍ନ ଖାଇ ଆମ୍ଭେ   ଧରିଛୁଁ ଜୀବନ,
କର ଯୋଡ଼ି ନମୁଅଛୁଁ   ତବ ଶ୍ରୀଚରଣ । ୧୮ ।

---

ଡାଲଗଛ ।

ଦେଖ ଦେଖ ଡାଲଗଛ   ଦଶୁଛି ପ୍ରାନ୍ତରେ,
ଧାଡ଼ି ଧାଡ଼ି ଡାଲଗଛ   ଶୋଭା ବୃଦ୍ଧି କରେ । ୧ ।

---

* ଧାନକୁ କୁଲାରେ ପବନ ମୂହଁରେ ଉପରୁ ତଳକୁ ଅଳ୍ପକୁ ଅଳ୍ପ ପକାଇବାକୁ ବେଣୀ ବେଣୀ କହନ୍ତି ।

† ଫୁଡୁଗ—ଧାନ ଓଳିଆ ।

ଲମ୍ବ ଲମ୍ବ ତାଳଗଛ ଊର୍ଦ୍ଧ୍ୱେ ଟେକ ମୁଣ୍ଡ,
ସ୍ଥାନେ ସ୍ଥାନେ ଏକାଠାରେ ହୋଇଛନ୍ତି ରୁଣ୍ଡ । ୨ ।

ପବନ ବେଗରେ ଦେଖ ସୁ ସୁ ଶବ୍ଦ କରି,
ନଇଁପଡ଼ୁଛନ୍ତି ସର୍ବେ ଭାଙ୍ଗିଗଲା ପରି । ୩ ।

ତାଳଗଛ ଉପକାରୀ କେତେ ତାର ଗୁଣ,
କହୁଅଛୁଁ ତାର କଥା ଏକେ ଏକେ ଶୁଣ । ୪ ।

ଖରା ବରଷାରୁ ରଖେ ଜାଣ ତାଳପତ୍ର,
ମୁଣ୍ଡାଇଣ ଥାନ୍ତି ଲୋକେ କରି ତାକୁ ଛତ୍ର । ୫ ।

ତାଳପତ୍ର ଝାମ୍ପି ଅଟେ ବଡ଼ ଉପକାରୀ,
ଖରା ବର୍ଷାରେ ମୁଣ୍ଡାନ୍ତି ତାକୁ କୃଷିକାରୀ । ୬ ।

ତାଳପତ୍ର-ପକ୍ଷିଆକୁ ଦେଇଣ ମୁଣ୍ଡରେ,
ମୂଲିଆ କର୍ମ କରନ୍ତି ଧାନର କ୍ଷେତରେ । ୭ ।

ତାଳପତ୍ରେ ଗୁନ୍ଥାହୁଏ ବଡ଼ ତାଟମାନ,
ଥୋଇଥାମାନେ ଘୋଡ଼ାନ୍ତି ଅଖା ଓ ପଲାଣ । ୮ ।

ତାଳପତ୍ରରେ ହୁଏ ଶଗଡ଼ର ଟାଟି,
ଯାଆନ୍ତି ଆସନ୍ତି ଲୋକେ ଖରା ବର୍ଷା କାଟି । ୯ ।

ତାଳପତ୍ର-ପଖା ଅଟେ ବଡ଼ ଉପକାରୀ,
ବିଞ୍ଚି ହୋଇ ଢ଼ଡ଼ାଉ ନ୍ତ ତହିଁ ସ୍ୱେଦବାରି । ୧୦ ।

[illegible]ସହିତ ମନ୍ତ୍ର ଶାସ୍ତ୍ରର ପୁରାଣ,
ତାଳପତ୍ର-ପୁସ୍ତକରେ ଲେଖାଅଛି ଜାଣ । ୧୧ ।

ମହାପ୍ରସାଦର ପେଡ଼ି ସୁନ୍ଦର ଆସନ,
ତାଳପତ୍ରେ ଗୁନ୍ଥିଥାନ୍ତି ଆମ ଶିଳ୍ପୀଗଣ । ୧୨ ।

ଚାହାଳରେ ପିଲାମାନେ ଲୁହା ଲେଖନରେ,
ତାଳପତ୍ରେ ଲେଖୁଥାନ୍ତି ମୁହଁ ନଇଁ ଡରେ । ୧୩ ।

ତାଳପତ୍ରର ଆଦର ଅଟେ ସବୁଠାରେ,
ଜନ୍ମପତ୍ର ପଞ୍ଜିକାରେ ରାଜଦରବାରେ । ୧୪ ।

ପିଣ୍ଡା ଉପରେ ବସିଣ ନାହାକ, ଗୋସେଇଁ,
ପୋଥି ଖେଦା ଲେଖୁଥାନ୍ତି ନାସ ନେଇଁ ନେଇଁ । ୧୫ ।

ତାଳପତ୍ରେ କରି ମୁଦ କାନର ଗହଣା,
ପିନ୍ଧେ ଗଉଡର ଝିଅ ହୋଇଣ ଦୁଲଣା । ୧୬ ।

ତାଳପତ୍ରେ କରି ଗୁଣ୍ଡି ଝୁମୁକା ବାଜଣା,
ବଜାଇ ଖେଳେ ବାଳକ ହୋଇ ହୃଷ୍ଟମନା । ୧୭ ।

କସି କସି ତାଳସତ୍ତ୍ୱ ସୁସ୍ୱାଦୁ ମଧୁର,
ଗ୍ରୀଷ୍ମକାଳେ ଖାଇଁ ତାକୁ ତୃଷା କରି ଦୂର । ୧୮ ।

ପାଚିଗଲେ ତାଳଫଳ ପିଠା କରି ଖାଇ,
ତାଳଟାକୁ ନେଇ ଚ୍ଛଲେ ଉଖନ୍ତି ସଜାଇ । ୧୯ ।

ଗଛ ହେଲେ ତାଳଟାକୁ କରି ଦୁଇ ଫାଳ,
କାଢ଼ି ତହିଁ ମଧ୍ୟୁ ଶସ କରନ୍ତି ଆହାର । ୨୦ ।

ତାଳଗଛ ପଣ୍ଡ ହେଲେ ପୋଡ଼ି ଶିଶୁଗଣ,
ଅତି ଆନନ୍ଦରେ ତାହା କରନ୍ତି ଭକ୍ଷଣ । ୨୧ ।

ତାଳଗଛପଟା ଲାଗେ ବହୁତ କାର୍ଯ୍ୟରେ,
ଘରଶେଣୀ ଭିଡ଼ିପଟା ଗୃହ-ନିର୍ମାଣରେ । ୨୨ ।

ତାଳବାହୁଙ୍ଗା-କୋରଡ଼ କରନ୍ତି ଦଉଡ଼ି,
ଲୁଣାଯାଏ ତହିଁ ପୁଣି ଟୋକେଇ ଝୁଡ଼ି । ୨୩ ।

ଏହିପରି ତାଳଗଛ  ବଡ଼ ଉପକାରୀ,
ଧନ୍ୟ ଧନ୍ୟ ପ୍ରଭୁ ତୁମ୍ଭେ  ତାର ସୃଷ୍ଟିକାରୀ । ୧୪ ।
ସେହି ଉପକାର ଲାଗି  ତୁମ୍ଭ ଶ୍ରୀଚରଣ,
କର ଯୋଡ଼େ ନମୁଅଛୁଁ  ଅମ୍ଭେ ଶିଶୁଗଣ । ୧୫ ।

---

## ଆଖୁକ୍ଷେତ ।

ଗ୍ରାମର ଉତ୍ତର ଦଗରେ  ଦେଖ ଆଖୁକିଆରୀ,
ଆଖୁଗଛ ଦିଶେ ସୁନ୍ଦର  ମନ-ଆନନ୍ଦକାରୀ । ୧ ।
ଆଖୁବିଲ୍ ଚଷ କରନ୍ତି  ମାଘ ଫଗୁଣ ମାସେ,
ଖତ ଓ ପୀଡ଼ିଆ ଦଅନ୍ତି  ଭଲ ଫସଲ୍ ଆଶେ । ୨ ।
ପଟି ପଟି କରି ବିଲକୁ  ପାଣି ମାହାରୀ ଧରି,
ଭୁଅନ୍ତି ବହୁନ କୃଷକେ  ଅତି ଯତନ କରି । ୩ ।
କ୍ଷେତର ନିକଟେ ବସାଇ  ଟେଣ୍ଡାସଜ ବାହାଲ,
ପାଣି ନେଇ ବଳେ ମଡ଼ା'ନ୍ତି  ବେଗେ ଧରଣ ମାଲ । ୪ ।
ପୁଣି ଦେଖ କେତେ ସ୍ଥାନରେ  ସେଣାସଜ ବସାଇ,
ଗୀତ ଗାଇ ପାଣି ବୁହନ୍ତି  ବେଗେ କୃଷକ ଭାଇ । ୫ ।
ଆଖୁମଞ୍ଜି ଗଜା ହୋଇଣ  କ୍ରମେ କ୍ରମେ ବଢ଼ିଲା,
ଆଖୁଗଛ ଦାରି ସୁନ୍ଦର  ଆଖୁକ୍ଷେତ ଦିଶିଲା । ୬ ।
[illegible] କେଉଁଠି ଅଟୁବିଲକୁ  ଆଖୁ କରି କମଣ,
ପୀଡ଼ିଆ ପୁନଶ୍ଚ ଦଅନ୍ତି  ଆଖୁ ବଢ଼େ ବହୁନ । ୭ ।
ଦେଖୁ ଦେଖୁ ଆଖୁ କ୍ରମଶଃ  ଲମ୍ବ ଲମ୍ବ ବଢ଼ିଲା,
ତଅଁର ଧରଣ ମସ୍ତକେ  ଯେଡ଼େ ଉଚ୍ଚ ହୋଇଲା । ୮ ।

ଘନ ଘନ ବହେ ପବନ   ସୁଉ ସୁଉ ଶବଦେ,
ଆଖୁଗଛ ଦେଖ ଦୋହଲେ   ନାଚଇ କି ଆନନ୍ଦେ । ୯ ।
ଆଖୁମୂଳେ ମାଟି ଉଠାଇ   ଯୋଡଦଅନ୍ତି ମେଢ଼ା, *
ପତ୍ରରେ ଗୁଡ଼ାଇ ବାନ୍ଧନ୍ତି   ଆଖୁ ବେଢ଼ାକୁ ବେଢ଼ା । ୧୦ ।
ଏବେ ଘନ ଘନ ପବନେ   ଆଖୁଗଛ ନ ଟଳେ,
ସୁଦୃଢ଼ ହୋଇଣ ଅଛନ୍ତି   ଦେଖ ଚଭୁଆ † ବଳେ । ୧୧ ।
ଉଚ୍ଚେ ମଞ୍ଚା ବାନ୍ଧି କୃଷକେ   ଏବେ ଆଖୁବିଲରେ,
ରାତିରେ ଜଗନ୍ତି ସେଠାରେ   ଭାଲୁ ଶିଆଳ ଡରେ । ୧୨ ।
ଆଖୁ ପେଡ଼ା ହେବା ସମୟ   ଜାଣି କୃଷକଗଣ,
ଆଖୁଶାଳ କଲେ ନିର୍ମାଣ   କରି ଅତି ଯତନ । ୧୩ ।
ଆଖୁ ଖାଇ ସଜ ବସାଇ   ଆଖୁରସ ପେଡ଼ନ୍ତି,
ଖଦା କରି ଆଖୁଶାଳରେ   ବେଗେ ଗୁଡ଼ ରାନ୍ଧନ୍ତି । ୧୪ ।
ଗୁଡ଼ ରାନ୍ଧିସାରି କୃଷକେ   ମାଟିକଳସେ ଭରି,
ଘରକୁ ନଅନ୍ତି ଆନନ୍ଦେ   ବିଲୁ ଦୟା ସୁମରି । ୧୫ ।

——:o:——

## ଚତୁର୍ଥ ଭାଗ—ଅଭିନୟ ବା ଖେଳାଗୀତ ।

---

### କାତରା ।

ଅତି ପ୍ରଭାତରୁ   ଗ୍ରାମର ଦାଣ୍ଡେ,
କାତରାର ଡାକ   ଶୁଭିଲା ଚଣ୍ଡେ । ୧ ।
ଗୌଡଗାଁକୁ ଦାଣ୍ଡ   ଦିଆ ପଡ଼ିଛି,
କାତବାଲା ଡାକ—ଡାକ ଚାଲିଛି, । ୨ ।

---

* ମେଢ଼ ଶବ୍ଦର—କାଷ୍ଠ ଖଣ୍ଡ ।
† ଚଭୁ ଶବ୍ଦର—ଛୋଟ ବାଉଁଶଖଣ୍ଡମାନ ।

ଗୋଚର ପ୍ରାନ୍ତର ପ୍ରଭାତ କାଳେ
ଆବୃତ ଚୌଦିଗ କୁହୁଡ଼ିଜାଲେ । ୩ ।
ବୃକ୍ଷପତ୍ରୁଁ ଝଡ଼ି ପଡ଼େ ଶିଶିର
କୁସୁମ-କଳିକା ଦିଶେ ରୁଚିର । ୪ ।
ଗୋ-ମହିଷଦଳ ଗୋଠରେ ଥିଲେ
କାତର ଡାକେ ଉଠି ଚାହିଁଲେ । ୫ ।
କ୍ରମେ ସୂର୍ଯ୍ୟଦେବ ହେଲେ ଉଦୟ
ଚୌଦିଗ ହୋଇଲା ଆଲୋକମୟ । ୬ ।
ସୂର୍ଯ୍ୟକିରଣରେ କୁହୁଡ଼ିରାଶି
ବାଷ୍ପାକାରେ ଗଲେ ବାୟୁରେ ଭାସି । ୭ ।
କାତର ଡାକ ଶୁଭିଲା କର୍ଣ୍ଣେ
ପୁନଶ୍ଚ ଗୋଚର ପ୍ରାନ୍ତର ଦାଣ୍ଡେ । ୮ ।
"କାଠ କିଣିବ ଆସ ହୋ କାଠ କାଠ"।
ପ୍ରଭାତରୁ କିଏ ଡାକ ଶୁଣୁଛି
କାଠବାଲା ଡାକ—ଡାକି ଯାଉଛି । ୯ ।
ବାଡ଼ି ଧରି ହାତେ ଗୋପବାଳକ
ଏକାକୀ ବୁଲଇ ହୋଇ ନିଦକ । ୧୦ ।
କୃଷକ ବହନ ବଳେ ଯାଉଛି
ପୋଥି ଧରି ଶିଶୁ ଧୀରେ ଆସୁଛି । ୧୧ ।
ଗଣ୍ଡିରା ପକାଇ ପିଠି ଉପରେ
ପ୍ରଭାତେ ପଥିକ ଯାଏ ବେଗରେ । ୧୨ ।
ଏମାନେ କାତର—ଡାକ ଶୁଣିଲେ
ନ ଶୁଣିଲା ପରି ବେଗେ ଚଳିଲେ । ୧୩ ।

ଅଦୂରେ ଦିଶଇ ସୁନ୍ଦର ସର
ପୂର୍ଣ ରହିଅଛି ନିର୍ମଳ ନୀର । ୧୪ ।

ଘୃରପାଖେ ଉଚ୍ଚ ବନ୍ଧ ଦିଶୁଛି
ବୃକ୍ଷଶ୍ରେଣୀ ତହିଁ ଶୋଭା ପାଉଛି । ୧୫ ।

ପୋଖରୀର ତୁଠ ଦିଶେ ଶଉଚ
ଭଲ ପଥରରେ ଗଢ଼ା ପାହାଚ । ୧୬ ।

ତହିଁରେ ବସିଛି ସାଧବ ଝିଅ
ସାଙ୍ଗ ସଉଣାଙ୍କ ସେ ବଡ଼ ପ୍ରିୟ । ୧୭ ।

ନାନା ଅଳଙ୍କାରେ ହୋଇଛି ସାଜ ।
ପାହାଚରେ ବସି ହେଉଛି ମାଜ । ୧୮ ।

ଗ୍ରାମର ନିକଟ ପୋଖରୀ ଦାଣ୍ଡେ
କାଚଡାକ ପୁଣି ଶୁଭିଲା ତୁଣ୍ଡେ । ୧୯ ।

କାଚବାଲା ଡାକ ଆସଇ ଝଟେ
ମିଳିଲା ଆସିଣ ପୋଖରୀତଟେ । ୨୦ ।

ସାଧବ ଝିଅର ବଳିଲା ମନ
କାଚ କିଣିବାକୁ ହୋଇଲା ଛନ । ୨୧ ।

କାଚଚୂଡ଼ି ଦେଖ—ଦେଖ ଗୋ ଝିଅ
କି ସୁନ୍ଦର ଚୂଡ଼ି କିଣି ଗୋ ନିଅ । ୨୨ ।

ପିନ୍ଧାଇବି ହାତ ଦେଖାଇଦିଅ
ହାତ ବଢ଼ାଇଣ—ଦେଲା ସେ ଝିଅ । ୨୩ ।

କାଚବାଲା କାଚ ଦେଲା ପିନ୍ଧାଇ
କାଚ ପିନ୍ଧି ଝିଅ ହୋଇଲା ବାଇ । ୨୪ ।

କ୍ରମେ ଗାଆଁ ଝିଏ ହୋଇଲେ ଠୁଳ
ଚଞ୍ଚଳ ହୋଇଲା ପୋଖରୀକୂଳ । ୨୫ ।

କାଚଚୂଡ଼ି ଦେଖି ଝିଅଙ୍କ ମନ
କାଚ କିଣିବାକୁ ହୋଇଲା ଛନ । ୨୬ ।

ଯେ ଯାହା ଘରରୁ ଅଣି କଉଡ଼ି
ବାଛୁ କିଣି ନେଲେ କାଚର ଚୂଡ଼ି । ୨୭ ।

କାଚଗ୍ରବାପୁଅ ବେଗେ ଉଠିଲା
"କାଚ" "କାଚ" ଡାକି ପୁଣି ଚଳିଲା । ୨୮ ।

କାଚ ପିନ୍ଧି ଏବେ ଗାଁ ଝିଅଗଣ
କାଚ ଦେଖି ହାତେ ହରଷ ମନ । ୨୯ ।

ସାଧବ ଝିଅକୁ ଘେନି ସଙ୍ଗତେ
ବାହୁଡ଼ିଲେ ଘରେ ଧୀରେ ସମସ୍ତେ । ୩୦ ।

——:୦:——

ପୁଷି, ମୂଷି ଦୁଇ ବଲେଇ ଓ ଠେଙ୍ଗା ବାନର ।

ପୁଷି, ମୂଷି ନାମେ ଥିଲେ ଦୁଇଟି ବଲେଇ,
ଘି ପିଠା ଗୋଟିଏ ଦିନେ ଆଣିଲେ ଚୋରାଇ । ୧ ।

ପିଠା ଗୋଟି ଘେନି ଦୁହେଁ ଅତି ଆନନ୍ଦରେ,
ପହଞ୍ଚିଲେ ଯାଇ ଏକ ଗଛର ତଳରେ । ୨ ।

ପିଠା ଖାଇବାକୁ ଦୁହେଁ ହେଲେ ଠାଉ ଠାଉ,
ଛିଣ୍ଡାଇଲା ପିଠା ମୂଷି କହି ମାଉଁ ମାଉଁ । ୩ ।

ବଡ଼ ଖଣ୍ଡ ବାଛି ନେଲା ବେଗେ ବେଗେ ପୁଷି,
ସାନ ଖଣ୍ଡ ପାଇ ମୂଷି ବସିଲାକ ରୁଷି । ୪ ।

ସଟେ ଜଗର ଜଗର ମୂଷି   ଲାଙ୍ଗୁଳ ଫୁଲାଇ,
କଳି କଲା ପୁଷି ସଙ୍ଗେ   ଲାଞ୍ଜକୁ ବୁଲାଇ । ୫ ।

ଖ୍ୟାଉ ଖ୍ୟାଉ କରି ହେଲେ   କାମୁଡ଼ା କାମୁଡ଼ି,
ଖୁଆଖୋଇ ହେଲେ ପୁଣି   ଆମ୍ପୁଡ଼ା ଆମ୍ପୁଡ଼ି । ୬ ।

ଠେଶା ନାମେ ବାନରେକ   ଥିଲା ଗଛଡାଳେ,
ବିରାଡ଼ିଙ୍କ କଳି ଦେଖୁ—ଥିଲା ଅନ୍ତରାଳେ । ୭ ।

ପିଠା ଦେଖି ଲୋଭ କଲା   ହୋଇ ବଡ଼ ଖୁସି,
କଳି ଭାଙ୍ଗି ପିଠା ନେବ   ଠକି ପୁଷି ମୂଷି । ୮ ।

ଏହା ଭାବି ଠେଶା ବେଗେ   ଗଛରୁ ଓହ୍ଲାଇ,
ନମସ୍କାର ନମସ୍କାର   ପୁଷି ମୂଷି ଭାଇ । ୯ ।

ବୃଥା କିପାଁ କଳି କର   ଅହେ ପୁଷି ମୂଷି,
ପିଠା ବାଣ୍ଟିଦେବ ମୁହିଁ   ହେବ ବଡ଼ ଖୁସି । ୧୦ ।

ଏହା କହି ନିକିତିଟିଏ   ଅଣ୍ଟାରୁ କାଢ଼ିଲା,
ପିଠା ଦୁଇଖଣ୍ଡ ନେଇ   ଓଜନ କରିଲା । ୧୧ ।

ଏପାଖେ ସେପାଖେ ଠେଶା   ଠେରେଇ ଚାହିଁଲା,
ପାଖେ ନିକିତି ନଇଁଅଛି   ନଜର ପଡ଼ିଲା । ୧୨ ।

ଭାରି ପାଖ ପିଠାଖଣ୍ଡୁଁ   ଖାଇଦେଲା ପୁଳେ,
ଆର ପାଖ ନଇଁଗଲା   ପୁଣି ଯହୁଁ ତୁଲେ । ୧୩ ।

ଭାରି ପାଖ ପିଠାଖଣ୍ଡୁଁ   ଖଣ୍ଡେ କଲା ଗ୍ରାସ,
ପାଖେ ଭାରି ପାଖେ ପୁଣି   ହୋଇଲା ଉଣ୍ଢାସ । ୧୪ ।

ଭାରି ପାଖୁଁ ପୁଣି ପିଠା   ସବୁ ଦେଲା ଖାଇ,
ଅନ୍ୟ ପାଖ ନଇଁଗଲା   ଠେଶା ଦେଲା ଚାହିଁ । ୧୫ ।

ବାଙ୍କା ପିଠାଖଣ୍ଡ ଦେଲା   ଟିକି ଟାଉ ଟାଉ,
ନିକ୍ତି ଦୁଇ ପାଖେ କିଛି   ନ ରହିଲା ଆଉ । ୧୬ ।

ଗୁଲୁ ଗୁଲୁ ଚାହିଁଥିଲେ   ନିର୍ବୋଧ ବଲେଇ,
ପିଠାସବୁ ଖାଇ ଟେକ   ଗଲା ଡେଇଁ ଡେଇଁ । ୧୭ ।

କଳି କରି ପୁଷି ମୁଷି   ନ ପାଇଲେ କିଛି,
ପର ଖାଇଗଲା ପିଠା   ପଛେ ହେଲେ ଛି ଛି । ୧୮ ।

ଶିଖ ହେ ବାଳକ ଏଥୁଁ   ଉପଦେଶ କଥା,
ଘର କଳି ପରେ ଭାଙ୍ଗ   ନ ପାଇବ ବ୍ୟଥା । ୧୯ ।

ଘର କଳି ପରେ ଯେବେ   ନ କର ନିଷ୍ପତ୍ତି,
ପର ହାତେ ହରାଇବ   ନିଜର ସମ୍ପତ୍ତି । ୨୦ ।

---

## ପାଞ୍ଚ ମୂଷ ଛୁଆ ।

ପାଞ୍ଚଗୋଟି ମୂଷାଛୁଆ   ସୁନ୍ଦର କେସନ,
ଧାନ ଖାଇବାକୁ ଦେଖ   ଆସନ୍ତି ବହନ । ୧ ।

ଟୁକି ଟୁକି ଧାନ ଦେଖ   ଦେଉଛନ୍ତି ଖାଇ,
କେଡ଼େ ବେଗେ କି ଆନନ୍ଦେ   ଦେଖ ଦେଖ ଭାଇ । ୨ ।

ଘର ଉହାଡ଼େ ବରାଡ଼ି   ରହିଛି ଅନାଇ,
ମୂଷାଛୁଆ ଗୋଟି ଗୋଟି   ଧରିଯିବା ପାଇଁ । ୩ ।

ଛକି ଛକି ଦେଖ ଧୀରେ   ବରାଡ଼ି ଆସୁଛି,
ଛପି ଛପି ମୂଷା ଆଡ଼େ   କପଟେ ଚାହୁଁଛି । ୪ ।

ଝପ୍ କରି ଝାମ୍ପି ଦେଲା   ଦେଖ ରେ ବଲେଇ,
ମୂଷାଟିଏ ମୁଖେ ଧରି   ଗଲା ରେ ପଳାଇ । ୫ ।

## ବାଘ ଶିକାର ।

ଗ୍ରାମ ଚତୁର୍ଦ୍ଦିଗେ ଦେଖ   ଗହନ କାନନ
ନାନା ଜାତି ତରୁଲତା   ଦିଶେ ସୁଶୋଭନ । ୧ ।
ନାନା ଜାତି ବ୍ୟାଘ୍ର ବନେ   କରନ୍ତି ଭ୍ରମଣ
କ୍ଷୁଧା ନିବାରନ୍ତି ନାଶି   ବହୁ ଜୀବଗଣ । ୨ ।
ଆଜକାଲି ବାଘ ବଡ଼   ହୋଇଛି ପ୍ରବଳ
ମାରୁଛି ମହିଷ, ଗୋରୁ,   ମନୁଷ୍ୟ, ଛାଗଳ । ୩ ।
ବାଘଭୟେ ଘରୁ କେହି   ନୁହନ୍ତି ବାହାର
ପଡ଼ିଯାଇଅଛି ବାଟ   ଅଭ କାରବାର । ୪ ।
ମେଷମାନେ ଚରୁଛନ୍ତି   ଗ୍ରାମର ପ୍ରାନ୍ତରେ
ମେଷପାଳ ଜଗିଅଛି   ଅତି ଯତନରେ । ୫ ।
ମେଷଛୁଆମାନେ ଦେଖ   ଅତି ଆନନ୍ଦରେ
ତେଇଁ ତେଇଁ ଚରୁଛନ୍ତି   ମାଆ ନିକଟରେ । ୬ ।
ସେ ବଣରେ ବାଘ ପଶ୍ଚ   ରହିଛି ଅନାଇ
ମେଷମାନ ଏକେ ଏକେ   ଧେନିଯିବା ପାଇଁ । ୭ ।
ଛକି ଛକି ବାଘ ଦେଖ   କେମନ୍ତେ ଆସୁଛି
ଆଗ ପଛ ଦ୍ୱି କରକୁ କେମନ୍ତେ ଗୁନ୍ଥୁଛି । ୮ ।
କି ବେଗରେ ବାଘ ଦେଖ   କୁଦାଏ ମାଇଲା
ମେଷ ମଧ୍ୟରୁ ଗୋଟାଏ   ନେଇ ପଳାଇଲା । ୯ ।
ମେଷ, ମେଷଛୁଆମାନେ   ଲଣ୍ଡଭଣ୍ଡ ହୋଇ
ମେଷପାଳ ପଛେ ପଛେ   ଯାଆନ୍ତି ପଳାଇ । ୧୦ ।
ମଡ଼ ହୋଇଅଛି ଗୁଲି   ମଞ୍ଚାରେ ଚଢ଼ିବା
ଏ ବାଘର ପ୍ରାଣ ଆଜ   ନିଶ୍ଚେ ବିନାଶିବା । ୧୧ ।

ନଳୀ ହାତେ ଶିକାରିଏ ମଞ୍ଚାର ଉପର
ଢିଢି, ଢିଢି କରୁ ଗୁଳି ମାରିଲେ ସତ୍ୱର । ୧୨ ।
ଓହ୍ଲାଅ ମଞ୍ଚାରୁ ବେଗେ, ବାଘ ମରିଅଛି
କେଡ଼େ ବଡ଼ ମହାବଳ ଦେଖ ପଡ଼ିଅଛି । ୧୩ ।
କାନ୍ଧେ ବୋହି ନେଇ ବାଘ ଚାଲ ବେଗେ ଯିବା
ପିଲାଙ୍କ ଆଗରେ ନେଇ ବାଘ ଦେଖାଇବା । ୧୪ ।
ବାଘ ଦେଖି ପିଲାମାନେ ହୋଇଲେ କାତର
ପଳାଇ ଯାଇ କହିଲେ ମାତାଙ୍କ ଆଗର । ୧୫ ।

---

## ଜହ୍ନୀଫୁଲ ଖେଳ ।

ହେଲାଣି ଶରଦକାଳ ଦେଖ ଘରେ ଘରେ,
ଫୁଟିଅଛି ଜହ୍ନୀଫୁଲ ବାଡ଼ମାନଙ୍କରେ । ୧ ।
ସନ୍ଧ୍ୟାବେଳେ ଜହ୍ନୀଫୁଲ ଫୁଟିଛି ଭରିଆ,*
ବାଡ଼ମାନ ଦିଶୁଅଛି କେଡ଼େ ହଳଦିଆ । ୨ ।
ଚାଲ ହେ ବାଳକ ଆଜ ସର୍ବେ ହୋଇ ମେଳ
ଆନନ୍ଦେ ଆହ୍ଲାଦ କରି ଜହ୍ନୀଫୁଲ ଖେଳ । ୩ ।
ଆସ ଆସ ହେ ବାଳକେ ଯିବା ଡଙ୍ଗଲରେ
ତୋଳି ଜହ୍ନୀଫୁଲ ସର୍ବେ ମହା ଆନନ୍ଦରେ । ୪ ।
ଚାଙ୍ଗୁଡ଼ିରେ ଜହ୍ନୀଫୁଲ ସାଜି ଯତନରେ
ଦେଖିନା ଫୁଲ ଚାଙ୍ଗୁଡ଼ି ଯିବା ଘରେ ଘରେ । ୫ ।
ନାଚ ନାଚ ଦାଣ୍ଡେ ଦାଣ୍ଡେ ଯିବା ସାରୁ ସାରୁ
ଆନନ୍ଦରେ ଗୀତ ଗାଇ ତାଳି ମାରୁ ମାରୁ । ୬ ।

---

* ଭରିଆ—ପୂରର ପରିମାଣରେ ।

ନାଚ ନାଚ ଭିଖ ମାଗି   ଯିବା ଦ୍ୱାର ଦ୍ୱାର
ଛୋଠା ଠୋଠା କରତାଳ   ଦେଇ ବାରମ୍ବାର । ୭ ।

ଇହ୍ନୀଫୁଲ୍ ଠୋ ଠା
ଜହ୍ନୀଫୁଲ୍ ଠୋ ଠା
ଗୁଣ୍ଡୁଚିମୂଷା କହି ଯାଇଛି
ଚାଉଳ ମୁଠାଏ ଥୋଇଥା ।
ହାଣ୍ଡି ଘଡ଼ୁ ଘଡ଼ୁ କରୁଛି
ଦେବା ଦେବା ବୋଲୁଛି
ବାଡ଼ିଅଡ଼େ କୂଅ ଛି
ଦାଣ୍ଡଅଡ଼େ କୂଅ
ଚୁଟିଅମୂଷା କହିଦେଇଛି
ଚାଉଳ ମୁଠିଏ ଦିଅ ।

ଚାଉଳ ମିଳିଲା ଏବେ   ଆସ ଆସ ଯିବା,
ଗୁଡ଼ିଆକୁ ଦେଇ ତାହା   ଉଖୁଡ଼ା କିଣିବା ।
ଉଖୁଡ଼ା ଖାଇଣ ସର୍ବେ   ମହା ଆନନ୍ଦରେ
ହରିନାମ ହୁଳି ସର୍ବେ   ବାହୁଡ଼ିବା ଘରେ ।

---

## କୁଠାର ଓ ଜଳଦେବତା ।

(ସମସ୍ତ ବାଳକ ମିଳି ଗାଇବେ)

ଏକ ଗ୍ରାମେ ବାସ କରେ   ଦୁଃଖୀ ହରିଦାସ,
ନାହିଁ ତାର ଜମୀ ବାଡ଼ୀ   ନାହିଁ ତାର ଗୃହ । ୧ ।

ପ୍ରତିଦିନ ଜଙ୍ଗଲକୁ   କାଠ କାଟି ଯାଏ,
କାଠ ବିକି ବିକି ସେହି   କୁଟୁମ୍ବ ବଞ୍ଚାଏ । ୨ ।

ଦିନେ ହରି ଭାଗ୍ୟେ ଯାହା  ଘଟିଥିଲା ବନେ,
କହୁଅଛୁଁ ସେହି କଥା  ଶୁଣ ଏକ ମନେ । ୩ ।
ପୁତ୍ରେ ଝାମ୍ପି କାନ୍ଧେ ଠାଙ୍ଗି  ହରି ଗଲା ବନେ,
ଶୁଷ୍କ କାଠ ଖୋଜି ବୁଲେ  ଗହନ କାନନେ । ୪ ।
ଏକ ନଦୀତଟରେ ଶେଷେ  ଯାଇଣ ମିଳିଲା,
ଶୁଖିଅଛି କେତେ ଗଛ  ସେଠାରେ ଦେଖିଲା । ୫ ।
ନଦୀତଟଂ ଶୋଭା ଦେଖି  ହରି ବିମୋହିତ,
ଉଭା ହୋଇ ନଦୀତଟରେ  କହେ ହୃଷ୍ଟଚିତ୍ତ । ୬ ।

ହରିଦାସ—

କି ସୁନ୍ଦର ଶୋଭାମୟ  ଏହି ବନଦେଶ,
ନାନାଜାତି ତରୁଲତା  ଅଛନ୍ତି ଅଶେଷ । ୭ ।
ଗମ୍ଭୀର ନଦୀର ଜଳ  ବହେ କଳ କଳ,
ନାନାଜାତି ପକ୍ଷିଶବ୍ଦେ ପୂର୍ଣ୍ଣ ଏ ଅଞ୍ଚଳ । ୮ ।
ରମଣୀୟ ଏହି ସ୍ଥାନ  ଦେବଙ୍କ ଆସ୍ଥାନ,
ଭାଗ୍ୟବଳେ ଦେଖିଲି ମୁଁ  ତୃପ୍ତ ହେଲା ପ୍ରାଣ । ୯ ।
ବନଦେବ! ଜଳଦେବ!  ନମେଁ ଶ୍ରୀଚରଣ,
ଦୟା କରି ରକ୍ଷା କର  ମୁହିଁ ଅକିଞ୍ଚନ । ୧୦ ।

ସମସ୍ତ ବାଳକ ଗାଇବେ—

ଏହି! ଭାଇ ହରିଦାସ  ହେଲା ଆନନ୍ଦିତ,
କାଠ କାଟିବାକୁ ଗଲା  ହୋଇ ଏକଚିତ୍ତ । ୧୧ ।
କାଟୁ କାଟୁ ଠାଙ୍ଗିଆଟି  ହସ୍ତରୁ ଖସିଲା,
ନଦୀର ଗଭୀର ଜଳେ  ହଠାତ ପଡ଼ିଲା ।
ହରାଇ୍ ଠାଙ୍ଗିଆ ହରି  ଦୁଃଖରେ କାନ୍ଦିଲା । ୧୨ ।

ହରିଦାସ କ୍ରନ୍ଦନ କରୁଅଛି—

କି କରିବ କି କରିବ ଟାଙ୍ଗିଆଟି ଗଲା,
ଧନହୀନ ଦୁଃଖୀ ମୁହିଁ ଦୈବ ଏହା କଲା । ୧୩ ।
କପଟ ସଂସାର ମୋର ଏବେ ମୁଁ ଗୃଳିବ,
କି ଉପାୟ କରି ମୁହିଁ କୁଟୁମ୍ବ ପୋଷିବ । ୧୪ ।
ହା ଦଇବ ! ହା ଦଇବ ! କଲୁ ଏତେ ସରି,
କା ଆଗେ କହିବି ଯାଇ ଜୀବନ ମୋହର । ୧୫ ।
ଜଳଦେବ ! ଜଳଦେବ ! ନମେଁ ଶ୍ରୀଚରଣ,
ଦୟା କରି ଏ ବିପଦୁଁ ରଖ ଅକିଞ୍ଚନ । ୧୬ ।
ଭାରିଯା ପିଲାଏ ମୋର ଗୃହିଁ ବସିଥିବେ,
କାଠ କାଟି ନେଲେ ପୁଣି ଜୀବନେ ବଞ୍ଚିବେ । ୧୭ ।
ହେ ଦେବତା ଦିଅ ମୋର ଟାଙ୍ଗିଆ ବହନ,
କରଯୋଡ଼ି ଭକ୍ତିଭରେ କରୁଛି ବନ୍ଦନ । ୧୮ ।

ସମସ୍ତ ବାଳକ—

ଦରିଦ୍ରର ଦୁଃଖ ଶୁଣି ଦୟା ବହି ଚିତ୍ତେ,
ମିଳିଲେ ଜଳଦେବତା ସେଠାରେ ତୁରିତେ । ୧୯ ।

ଜଳଦେବ—

କି ହେଲା ରେ ହରିଦାସ କି ହେଲା ତୋହର,
କାହିଁ ପାଇଁ କାନ୍ଦୁଅଛୁ କହ ତୁ ସତ୍ୱର । ୨୦ ।

ହରିଦାସ—

କାଠ କାଟୁ କାଟୁ ମୋର ଟାଙ୍ଗୀ ଗଲା ଖସି,
ଗଭୀର ଜଳେ ପଡ଼ିଲା କାନ୍ଦୁଅଛି ବସି । ୨୧ ।

ହରାଇ ଠାଙ୍ଗିଆ ମୁହିଁ   ହୋଇଲି ଅନାଥ,
ଧନହୀନ ଦରିଦ୍ର ମୁଁ   ରଖ ମୋତେ ତାତ । ୨୨ ।
ଦୟା କର ପ୍ରଭୁ ମୋତେ   ଦିଅ ମୋ ଠାଙ୍ଗିଆ,
ନାହିଁ ଅନ୍ୟ ବ୍ୟବସାୟ   ମୁହିଁ କାଠୁରିଆ । ୨୩ ।

ସମସ୍ତ ବାଳକ—

ଏହା ଶୁଣି ଜଳଦେବ   ହେଲେ ଜଳମଗ୍ନ,
ସୁନାର ଠାଙ୍ଗିଆ ଧରି   ମିଳିଲେ ବହନ । ୨୪ ।

ଜଳଦେବ—

ସ୍ୱର୍ଣ୍ଣର ଠାଙ୍ଗିଆ ନିଅ   ଆହେ କାଠୁରିଆ,
କଣ୍ଟିନ୍ତରେ ଦେନଯାଅ   ତୁମ୍ଭର ଠାଙ୍ଗିଆ । ୨୫ ।

ହରିଦାସ—

କ୍ଷମା କର ପ୍ରଭୁ ମୋତେ   ମୁହିଁ କାଠୁରିଆ,
ସ୍ୱର୍ଣ୍ଣେ ଲୋଭ ନାହିଁ ମୋର   ଲୁହାର ଠାଙ୍ଗିଆ । ୨୬ ।
ସ୍ୱର୍ଣ୍ଣେ ନାହିଁ ପ୍ରୟୋଜନ   ଲୁହା ମୋର ଧନ,
ଲୁହା ଠାଙ୍ଗିଆରେ ମୁହିଁ   ପାଳଇ ଜୀବନ । ୨୭ ।

ସମସ୍ତ ବାଳକ—

ଏହା ଶୁଣି ଜଳଦେବ   ପୁଣି ଜଳମଗ୍ନ,
ରୂପାର ଠାଙ୍ଗିଆ ଘେନ   ଆସିଲେ ବହନ । ୨୮ ।

ଜଳଦେବ—

ରୂପାର ଠାଙ୍ଗିଆ ନିଅ   ଆହେ ହରିଦାସ,
ତୁମ୍ଭ ଠାଙ୍ଗି ପାଇ ଏବେ   ହୁଅ ହେ ଉଲ୍ଲାସ । ୨୯ ।

ହରିଦାସ—

ରୂପାର ଠାଙ୍ଗିଆ ଏତ   ନୁହେ ଏ ମୋହର,
ଲୁହାର ଠାଙ୍ଗିଆ ମୋର   ଦିଅ ଦୟା କରି । ୩୦ ।

ସମସ୍ତ ବାଳକ—

ପୁଣି ଜଳଦେବ ଯାଇ   ଜଳରେ ବୁଡ଼ିଲେ,
ଲୁହାର ଟାଙ୍ଗିଆ ଘେନ   ସତ୍ୱର ଆସିଲେ । ୩୧ ।

ଜଳଦେବ—

ଏ ଟାଙ୍ଗିଆ ତୁମ୍ଭର କି   ଅହେ ହରଦାସ ?
ଚିହ୍ନି ନିଅ ଟାଙ୍ଗିଆକୁ   ବେଗେ ବେଗେ ଆସ । ୩୨ ।

ହରଦାସ—

ଏ ଲୁହା ଟାଙ୍ଗିଆ ମୋର   ଏହିତ ମୋହର
କୃପା କରି ଦେଲ ମୋର   ଟାଙ୍ଗିଆ ଏଥର । ୩୩ ।
ନମୁଅଛିଁ କରଯୋଡ଼େ   ପ୍ରଭୁ ତୋ ଚରଣ,
ଦୟା କରି ରଖିଲ ହେ   ମୋହର ଜୀବନ । ୩୪ ।
ଧନ୍ୟ ଧନ୍ୟ ଜଳଦେବ   ମହିମା ଅପାର,
ତବ ଶ୍ରୀଚରଣେ ମୁହିଁ   ନମେ ବାରମ୍ବାର । ୩୫ ।

ଜଳଦେବ—

ଦୀର୍ଘାୟୁ ହୋଇଣ ଥାଅ   ଅହେ ହରଦାସ,
ପ୍ରଭୁଠାରେ ରଖିଥାଅ   ଏପରି ବିଶ୍ୱାସ । ୩୬ ।
ପ୍ରସନ୍ନ ମୁଁ, ଦେଖି ତବ   ସାଧୁ ବ୍ୟବହାର,
ନିଅ ସୁନା, ରୂପା ଟାଙ୍ଗୀ   ଦେଲି ପୁରସ୍କାର । ୩୭ ।

ହରଦାସ—

ଧନ୍ୟ ଧନ୍ୟ ପ୍ରଭୁ ତବ   କରୁଣା ଅପାର,
ଭକ୍ତିଭରେ ଶ୍ରୀଚରଣେ   ନମେ ବାରମ୍ବାର । ୩୮ ।

( ଜଳଦେବ ଅନ୍ତର୍ହିତ )

ଯାଇଲି ସୁନାର ଝାଙ୍ଗୀ, ରୂପାର ଝାଙ୍ଗିଆ,
ଭାଗ୍ୟେ ଥିଲା ଏହା ମୋର ମୁହିଁ କାଠୁରିଆ । ୩୯ ।

ସମସ୍ତ ବାଳକ—

ସୁନା ରୂପା ଝାଙ୍ଗୀ ଧରି ଅତି ଆନନ୍ଦରେ,
ଫେରିଯାଇ ହରିଦାସ ଏବେ ନିଜଘରେ । ୪୦ ।
କ୍ରମେ ହରିଦାସ ଯାଇ ଘରେ ପହୁଞ୍ଚିଲା,
ସୁନା ରୂପା ଝାଙ୍ଗୀ କଥା ଚହଳ ପଡ଼ିଲା । ୪୧ ।
ସାଇ ପଡ଼ିଶାଏ ଠୁଳ ହେଲେ ତାହା ଘରେ,
ପଚ୍ଚାରନ୍ତି ସର୍ବେ ତାକୁ ଅତି ଆଗ୍ରହରେ । ୪୨ ।

ରାମଦାସ—

ସୁନାଝାଙ୍ଗୀ ରୂପାଝାଙ୍ଗୀ ହାଇରେ ହରିଆ,
କେଉଁଠାରୁ ଆଣିଲୁ ତୁ କହ ଏ ଝାଙ୍ଗିଆ । ୪୩ ।

ମଦନ ସାହୁ—

ହରି ଭାଇ ହରି ଭାଇ ତୁହ କପାଳିଆ,
କେଉଁଠାରୁ ଆଣିଲୁ ତ କହ ଏ ଝାଙ୍ଗିଆ । ୪୪ ।

ନନ୍ଦ ଯେନା—

ସୁନାଝାଙ୍ଗୀ ରୂପାଝାଙ୍ଗୀ କପଟ ପାଇଲୁ,
କେଉଁଠାରୁ ତାହା ଭାଇ କପଟ ଆଣିଲୁ । ୪୫ ।

କଣ୍ଡ୍ରର ପାଣି—

ସୁନାଝାଙ୍ଗୀ ରୂପାଝାଙ୍ଗୀ କିଏ ଦେଲା ତୋତେ,
କହ କହ ରେ ହରିଆ ପିନ୍ଧାଇଣ ମୋତେ । ୪୬ ।

ହରଦାସ—

କାଠ ହାଣୁଥିଲି ମୁହିଁ   ନଦୀର ତଟରେ,
ଖସିଯାଇ ଠାଙ୍ଗୀ ମୋର   ପଡ଼ିଲା ଜଳରେ । ୪୭ ।

ହରାଇ ଠାଙ୍ଗିଏ ମୋର   କାନ୍ଦଇ କାତରେ,
ଦୟା କରି ଜଳଦେବ   ଆସିଲେ ସତ୍ୱରେ । ୪୮ ।

ସନ୍ତୁଷ୍ଟ ସେ ଦେଖି ମୋର   ସାଧୁ ବ୍ୟବହାର
ସୁନା ରୁପା ଠାଙ୍ଗୀ ଦେଲେ   ମୋତେ ପୁରସ୍କାର । ୪୯ ।

ସମସ୍ତ ବାଳକ—

ଏହା ଶୁଣି ଲୋଭେ ବଣ   କଣ୍ଢେଇଆ ପାଣି,
ସୁନା ରୁପା ଠାଙ୍ଗୀ ଆଣେ   ଗଲା କାଠ ହାଣି । ୫୦ ।

ପାପମନେ ଛଳ କରି   କାଠ ସେ ହାଣିଲା,
ଜାଣୁ ଜାଣୁ ଠାଙ୍ଗୀ ତାର   ଜଳକୁ ଫିଙ୍ଗିଲା । ୫୧ ।

ମୁଣ୍ଡେ ହାତ ମାରି ମାରି   ଛଳେ ସେ ବସିଲା,
ସୁନା ରୁପା ଠାଙ୍ଗୀ ଲୋଭେ   ଛଳେ ସେ କାନ୍ଦିଲା । ୫୨ ।

କଣ୍ଢେଇଆ କ୍ରନ୍ଦନ—

ଗଲା ଠାଙ୍ଗୀ ମୋର ଏବେ   କପଟ ବଞ୍ଚିବ,
କି ଉପାୟେ ମୁହିଁ ଏବେ   କୁଟୁମ୍ବ ପୋଷିବ । ୫୩ ।

ହୁଁ ହୁଁ ହୁଁ ଇତ୍ୟାଦି ।

ସମସ୍ତ ବାଳକ—

ଜଳଦେବ ଶୁଣି ତାର   ଦୁଃଖର କ୍ରନ୍ଦନ,
ଦୟା ବହି ମିଳିଲେ ସେ   ସେଠାରେ ବହନ । ୫୪ ।

ଜଳରୁ ଆଣିଲେ ସୁନା   ରୁପାର ଟାଙ୍ଗିଆ,
ନେବା ପାଇଁ ବଢ଼ାଇଲା   ହାତ କଣ୍ଠୁରିଆ । ୫୫ ।
ଜଳଦେବ ଜାଣି ତାର   ଅସତପଣିଆ,
ଦେଲେ ନାହିଁ ତାକୁ ମଧ୍ୟ   ନିଜର ଟାଙ୍ଗିଆ । ୫୬ ।

(ଜଳଦେବ—କଣ୍ଠୁରିଆ ପ୍ରତି)

ଧିକ୍ ତୋର ଛଳପଣ   ଆରେ କଣ୍ଠୁରିଆ,
ହରାଇଲୁ ନିଜ ଦୋଷେ   ନିଜର ଟାଙ୍ଗିଆ । ୫୭ ।
ଲୋଭ ହେତୁ ସୁନା ରୁପା   କରିଥିଲୁ ଆଶ,
ଅତି ଲୋଭେ ହେଲା ତୋର   ଏବେ ସର୍ବନାଶ । ୫୮ ।
ଧିକ୍ ତୋର ଛଳପଣ   ତୁହି ଅସତଆ,
ଅତି ଲୋଭେ ହରାଇଲୁ   ନିଜର ଟାଙ୍ଗିଆ । ୫୯ ।
ସାବଧାନ ହୁଅ ଏବେ   ଯାଅ ନିଜ ଘର,
ନିଜ କଲା କର୍ମ ଫଳ   ଏବେ ଭୋଗ କର । ୬୦ ।

(ଜଳଦେବ ଅନ୍ତର୍ହିତ)

କଣ୍ଠୁରିଆ—

ଲୋଭେ ପଡ଼ି ସୁନା ରୁପା   କଲି ମୁହିଁ ଆଶ,
ଲୋଭ ହେତୁ ହେଲା ମୋର ଏବେ ସର୍ବନାଶ । ୬୧ ।
ଲୁହା ଟାଙ୍ଗୀ ଗଲା ମୋର ଅତି ଲୋଭ କରି,
[illegible] ବୁଦ୍ଧି କଲି ମୁହିଁ   ହେଲି ଏତେ ସରୁ । ୬୨ ।

ସମସ୍ତ ବାଳକ—

ଏହା କହି କଣ୍ଠୁରିଆ   ଘରକୁ ଅଇଲା,
ସାଇ ପଡ଼ୋଶୀ ଆଗରେ   ସମସ୍ତ କହିଲା । ୬୩ ।

କଣ୍ଠୁରଥ—

ଶୁଣ ଶୁଣ ଭ୍ରାତାଗଣ   ଶୁଣ ମୋ କାହାଣୀ,
ମୋହର ଦୁର୍ଦ୍ଦଶା କଥା   କହୁଛି ବଖାଣି । ୬୪ ।

ହରିଦାସ ଭାଗ୍ୟ ଶୁଣି   ମୁହିଁ ଲୋଭ କଲି,
ସୁନା ରୂପା ଟାଙ୍ଗୀ ଆଣେ   ମୁହିଁ ବନେ ଗଲି । ୬୫ ।

ଛଳ କରି କାଠ କାଟି   ବନେ ନଦୀତୀରେ,
ଛଳ କରି ଫିଙ୍ଗିଦେଲି   ଟାଙ୍ଗିଆ ନଦୀରେ । ୬୬ ।

ଛଳ କରି କାନ୍ଦିଲି ମୁଁ   କରି ଆର୍ତ୍ତସ୍ୱର,
କାନ୍ଦ ଶୁଣି ଜଳଦେବ   ଆସିଲେ ସତ୍ୱର । ୬୭ ।

ଛଳ କରି କହିଲି ମୁଁ   ଦେବଙ୍କ ଆଗରେ,
ପଡ଼ିଲା ଟାଙ୍ଗିଆ ମୋର   ଜଳର ଭିତରେ । ୬୮ ।

ତାହା ଶୁଣି ଜଳଦେବ   ହେଲେ ଜଳମଗ୍ନ,
ସୁନା ରୂପା ଟାଙ୍ଗିଆ ସେ   ଆଣିଲେ ବହନ । ୬୯ ।

ସୁନା ରୂପା ଟାଙ୍ଗୀ ମୋତେ   ଯାଚିଦେଲେ ତାତ
ଲୋଭ କରି ନେବା ପାଇଁ   ବଢ଼ାଇଲି ହାତ । ୭୦ ।

ଜଳଦେବ ଜାଣିପାରି   ମୋର ଛଳପଣ,
ଟାଙ୍ଗିଆ ଛଡ଼ାଇନେଲେ   ମୋ ହସ୍ତୁ ବହନ । ୭୧ ।

ଧିକ୍କାରିଲେ ବହୁ ମୋତେ   ଦୁଷ୍ଟପଣ ପାଇଁ,
ନିଜର ଟାଙ୍ଗିଆ ମୋତେ   ଥରୁ ଦେଲେ ନାହିଁ । ୭୨

କୋପେ ଜର୍ଜରିତ ଦେବ   କୋପେ କମ୍ପମାନ,
ଦେଖି ସେ ଭୀଷଣ ମୂର୍ତ୍ତି   କମ୍ପିଲା ମୋ ପ୍ରାଣ । ୭୩ ।

ସ୍ତମ୍ଭିତ ହୋଇଲି କ୍ଷଣେ   ଜାଗିଲା ଜୀବନ,
କୁକର୍ମ କୁବୁଦ୍ଧି ମୋର   ହୋଇଲା ସ୍ମରଣ । ୭୪ ।

ଜାଣିଲି ମୁଁ ଜ୍ଞାନବଳେ   "ଲୋଭ" ଅଟେ ଖଳ,
ଲୋଭ ହେତୁ ମନୁଷ୍ୟର   ହୁଏ ମନ୍ଦ ଫଳ । ୭୫ ।

ଜାଗିଲା ସଦ୍‌ଜ୍ଞାନ ହୃଦେ   ଦୃଢ଼ ହେଲା ମନ,
ତର୍ଜ୍ଜନ ଗର୍ଜ୍ଜନ କରି   ଉଠିଲି ବହନ । ୭୬ ।

ଅରେ ଲୋଭ ଶତ୍ରୁ ତୁହି   ପକାଇଲୁ ଛନ୍ଦେ,
ବଶ କରି ନେଲୁ ମୋତେ   ଭୁଲାଇ ଆନନ୍ଦେ । ୭୭ ।

ହରିନେଲୁ ତୁହିଁ ମୋର   ସତ୍ୟ ବୁଦ୍ଧି ଜ୍ଞାନ,
ତୋର କୁହୁକରେ ପଡ଼ି   ଗଲା ମୋ ସମ୍ମାନ । ୭୮ ।

ଦୂର ହୁଅ ଦୂର ହୁଅ   ଜାଣିଲି ତୋ ଛଳ,
ନ ଯିବ ତୋ ପାଖେ କେବେ   ତୁହି ବଡ଼ ଖଳ । ୭୯ ।

ଅହେ ପ୍ରିୟ ଭାଇଗଣ   କହୁଛି ମୁଁ ଶୁଣ,
ପ୍ରତ୍ୟକ୍ଷେ ଦେଖିଲ ତୁମ୍ଭେ   ଲୋଭର କି ଗୁଣ । ୮୦ ।

ଅତି ଲୋଭ କଲି ମୁହିଁ   ନ ପୂରିଲା ଆଶ,
ଲୋଭ ହେତୁ ହେଲା ଦେଖ   ମୋର ସର୍ବନାଶ । ୮୧ ।

ଲୋଭର ଅଧୀନ କେବେ   ନ ହୁଅ ହେ ଭାଇ,
ଲୋଭକୁ ଦମନ କର   ବିଷ୍ଣୁନାମ ଧ୍ୟାୟି । ୮୨ ।

ସମାପ୍ତ ।

# ପରିଶିଷ୍ଟ ।

—o—

## ବକ୍ର (ବଙ୍କା) ।

୧ମ ଧାଡ—ସମ୍ମୁଖକୁ ଟିକିଏ ଝୁଙ୍କିପଡି ଲତାପରି ହାତ ବଙ୍କାଇ ବଙ୍କାଇ କ୍ରମେ ଉପରକୁ ଦେଖାଅ ।

୨ୟ ଧାଡ—ଲତାପରି ହାତ ବଙ୍କାଇ ସମ୍ମୁଖକୁ ଦେଖାଅ ।

୩ୟ ଧାଡ—ଆକାଶକୁ ହାତ ବଢାଇ ଉପରେ ବାମ ଅଙ୍ଗୁ ଡାହାଣ ଅଙ୍ଗକୁ କ୍ରମେ ଢଳିପଡ଼ି ଦ୍ୱିତୀୟା ଚନ୍ଦ୍ରପରି ଯୋର ସହିତ ବକ୍ରଭାବରେ ହାତ ଚଳାଅ ।

୪ର୍ଥ ଧାଡ—ପୂର୍ବପରି ବକ୍ରଭାବରେ ଯୋର୍ ସହିତ ହାତକୁ ଚଳାଅ ।

୫ମ ଧାଡ—ବର୍ଷାପାଣି ପଡଲା ପରି ହାତର ଅଙ୍ଗୁଳିଗୁଡିକ ଉପରୁ ତଳକୁ ଚଳାଇ ସୂର୍ଯ୍ୟର ବପଶ୍ଚିମ ଦିଗ ଦେଖାଇ ପରେ ବାମପାଦ ନିକଟକୁ ଯୋର ସହିତ ହାତ ନେଇ ମୁଣ୍ଡ ସମ୍ମୁଖରେ ପୁଣି ହାତକୁ ଦକ୍ଷିଣ ପାଦ ନିକଟକୁ ଅଣ ।

ଶେଷ ଧାଡ—ଯେଉଁ ଧାଡରେ ପିଲାମାନେ ଛିଡା ହୋଇଥିବେ ସେଠାରେ "ବଙ୍କାଇ" କହି ବଙ୍କାଭାବରେ ଏକ ପାଦ୍ଧୁଣ୍ଡ ଓ "ସ୍ୱଳ" କହି ଅଉ ଏକ ପାଦ୍ଧୁଣ୍ଡ ସମ୍ମୁଖକୁ ଯିବେ ଏବଂ "ସମସ୍ତେ" କହି ଏକ ପାଦ୍ଧୁଣ୍ଡ ଓ "ଫେରିବା" କହି ଆଉ ଏକ ପାଦ୍ଧୁଣ୍ଡ ପୂର୍ବପରି ବଙ୍କାଭାବରେ ପଛକୁ ହଟି ନିଜ ସ୍ଥାନକୁ ଆସିବେ । ଏହିପରି ୮ ଥର କରିବାକୁ ହେବ ।

---

## ସରଳ (ସଲଖ) ।

୧ମ ଧାଡ—ସମ୍ମୁଖକୁ ହାତ ଯୋର୍ ସହିତ ସିଧାଭାବରେ ବଢ଼ାଇ ପାପୁଲିକୁ ସିଧାଭାବରେ ତଳକୁ କୁଆଁଅ ।

୨ୟ ଧାଡ—ହାତକୁ ତଳୁ ଉପରକୁ ଯୋର୍ ସହିତ ସିଧାକରି ଉଠାଅ ।

୩ୟ ଧାଡ—ସମ୍ମୁଖରେ ତର୍ଜନୀ ଅଙ୍ଗୁଳିଦ୍ୱାରା ଗୋଟି ଗୋଟି ଦେଖାଅ ।

୪ର୍ଥ ଧାଡ—ଉପରକୁ ଦୁଇ ହାତ ଯୋରରେ ସିଧା କରି ଉଠାଇ ପୁଣି ଦକ୍ଷିଣ ଅଣ୍ଟିଠାକୁ ଅଣି ସମ୍ମୁଖକୁ ଦେଖାଅ ।

୫ମ ଧାଡ଼—ପ୍ରଥମେ ସମ୍ମୁଖକୁ ବାମହସ୍ତ ମୁଠାକରି ବଢ଼ାଇ ଦକ୍ଷିଣ ହସ୍ତରେ ଯୋର ସହିତ କର୍ଣ୍ଣପାଳି ଶର କାଟିଲାପରି ଦେଖାଅ ।

୬ଷ୍ଠ ଧାଡ଼—ହାତ ସମ୍ମୁଖକୁ ସନ୍ଧାକରି ଯୋରରେ ବଢ଼ାଅ ।

୭ମ ଧାଡ଼—ଧନୁ ଧରିଲାପରି ବାମହାତ ମୁଠା କରି ଆଗକୁ ଓ ଡାହାଣ ହାତ ଛାତି ପାଖକୁ ନିଅ ଓ ବାମଗୋଡ଼ ଆଗକୁ ଏବଂ ଦକ୍ଷିଣଗୋଡ଼ ପଛକୁ ରଖ ।

୮ମ ଧାଡ଼—ଶର ଛାଡ଼ିଲାପରି ଯୋର୍‌ସହିତ ଡାହାଣ ହାତ ଚଳାଅ ।

୯ମ ଓ ୧୦ମ ଧାଡ଼—ହାତ ସଳଖ କରି ସମ୍ମୁଖକୁ ଯୋର୍ ସହିତ ଦେଖାଅ ।

୧୨ଶ ଧାଡ଼—ଏକଧାଡ଼ ହୋଇ ସଳଖରେ ଠିଆହୁଅ ।

୧୩ଶ ଧାଡ଼— କର୍ଣ୍ଣପର୍ଯ୍ୟନ୍ତ ନମସ୍କାର କର ଓ ବାମହାତ ଘଣ୍ଟାକୁ ଅଣ ।

୧୪ଶ ଧାଡ଼—ବାମ କମ୍ପା ଡାହାଣ ଦଗକୁ ମୁହଁ ବୁଲାଇ ଯଗପଛ ହୋଇ ହିଁବେ ବୁଲିଯାଇ ପୁଣି ନିଜ ସ୍ଥାନକୁ ଆସି ପୂର୍ବପରି ଠିଆହୁଅ ।

---

## ଘୋଳି ଖେଳ ।

୧ମ ପଦ—୧ମ ଓ ୨ୟ ଧାଡ଼—ଖାଲଗୋଲି ଦେଖାଅ ।

୩ୟ ଓ ୪ର୍ଥ ଧାଡ଼—ମାରଠାଇ୨—ଗୋଲି କାଖରେ ଯାକି ଦୁଇ ହାତରେ ତାଳି ମାରି ପୁଣି ଘୋଳିକି ଦେଖାଅ ।

୨ୟ ପଦ—୧ମ ୨ୟ ଧାଡ଼—ହଳଦିଆ ଗୋଲି ଦେଖାଅ ।

୩ୟ ୪ର୍ଥ ଧାଡ଼—ହାତ ଉପରକୁ ଉଠାଇ ଗୋଲି ଦେଖାଅ ।

୩ୟ ପଦ—୧ମ ଧାଡ଼—ନାଲିଗୋଲି ଦେଖାଅ ।

୪ର୍ଥ ପଦ—୧ମ ଓ ୨ୟ ଧାଡ଼—ନାରଙ୍ଗୀ ଗୋଲି ଦେଖାଅ ।

୩ୟ ଧାଡ଼—ହାତ ହଲାଇ ମନାକଲାପରି କର ।

~~୫ମ ପଦ—୧ମ ଓ~~ ୨ୟ ଧାଡ଼—ବାଇଗଣୀ ଗୋଲି ଦେଖାଅ ।

୩ୟ ଓ ୪ର୍ଥ ଧାଡ଼—ହାତ ହଲାଇ ମନାକଲାପରି କର ।

୧ମ ଧାଡ଼—ଶ୍ୟାମରଙ୍ଗ ଗୋଲି ଦେଖାଅ ।

୬ମ ପଦ—୧ମ ଧାଡ଼—ହାତରେ ଠାରି ଡ଼ାକ ।

୮ମ ପଦ—ଦୁଇଦଳ ହୋଇ ଠିଆହୁଅ ଓ ପୁଣି ପୂର୍ବପରି ଠିଆ ହୋଇ ଖେଳ ଶେଷ କର ।

## ରାଣୀ ଖେଳ ।

୧ମ ପଦ—ଛଳରଙ୍ଗ ମାଳି ଏକହାର ଜଣେ ବାଳିକା ଧରି ଦେଖାଇବ ଓ ପୁଣି ମାଳିକ ଗଳାରେ ଲମ୍ବାଇ ଦେଖାଇବ, ଏହିପରି ସମସ୍ତ ପଦରେ କରିବାକୁ ହେବ ।

ଶେଷ ପଦ—ହାତ ଧରାଧରି ହୋଇ ବାଳିକାମାନେ ଗୋଲ ହୋଇ ଛିଡ଼ାହେବେ ଓ ଜଣେ ରାଣୀ ହୋଇ ମଝିରେ ଛିଡ଼ା ହେବ ଏବଂ ବାଳିକାମାନେ ତାର ଚାରିପାଖରେ ବୁଲି ଓ ନାଚି ଗାଇବେ ।

---

## ସ୍ପର୍ଶେନ୍ଦ୍ରିୟ ।

୧ମ ଓ ୨ୟ ଧାଡ଼—ସମସ୍ତ ଶରୀରରେ ହାତ ବୁଲାଇ ଦେଖାଅ ।

୩ୟ ଓ ୪ର୍ଥ ଧାଡ଼—ବସିଯାଇ ଦେହରେ ହାତ ମାରି ଓ ପୁଣି ଉଠିଯାଇ ଟିକିଏ ପୃଷ୍ଠ ଛିଡ଼ାହୁଅ ।

୫ମ ଧାଡ଼—ଦେହରେ ହାତ ବୁଲାଇ ପୁଣି ହାତ ବଢ଼ାଅ ।

୬ଷ୍ଠ ଧାଡ଼—ଦେହରେ ହାତ ବୁଲାଇ ପବନ ଦେଖାଅ ।

---

## ଦର୍ଶନେନ୍ଦ୍ରିୟ ।

୧ମ ଧାଡ଼—ଅଖିରେ ହାତ ମାରି ହାତ ବଢ଼ାଇ ଚାରିଦଗ ଦେଖାଅ ।

୨ୟ ,, —ଅଙ୍ଗୁଳିରେ ଗ୍ରାମ, ବନ ଆଦି ଗୋଟି ଗୋଟି କରି ଦେଖାଅ ।

୩ୟ ,, —ଉପରକୁ ଚାହାଁ ଓ ହାତ ବଢ଼ାଇ ଅଙ୍ଗୁଳିରେ ସୂର୍ଯ୍ୟ, ଚନ୍ଦ୍ର ପ୍ରଭୃତି ଦେଖାଅ ।

୪ର୍ଥ ,, —ଅଖିରେ ହାତ ମାରି ଦେଖାଅ ।

୫ମ ,, —ଚିଢ଼ି, ବର୍ଣ୍ଣ, ଅଙ୍ଗୁଳିରେ ଗୋଟି ଗୋଟି କରି ଦେଖାଅ ।

୬ଷ୍ଠ ,, —ଅଖିରେ ହାତ ମାରି ଦେଖାଅ ।

---

## ଶ୍ରବଣେନ୍ଦ୍ରିୟ ।

୧ମ ଓ ୨ୟ ଧାଡ଼—କାନରେ ହାତ ମାରି ।

୩ୟ ଧାଡ଼—ଗୀତ, ବାଦ୍ୟ, ଧ୍ୱନି ଗୋଟି ଗୋଟି ଅଙ୍ଗୁଳିରେ ଦେଖାଇ କାନରେ ହାତ ମାର ।

୪ର୍ଥ, ୫ମ, ୬ଷ୍ଠ, ୭ମ ଧାଡ଼—ପୂର୍ବପର ଗୋଟି ଗୋଟି ଦେଖାଅ ।

୮ମ ଧାଡ଼—କାନରେ ହାତ ଦେଇ ସ୍ତବ୍ଧ ହେଲପରି ଛିଡ଼ା ହୁଅ ।

---

## ଘ୍ରାଣେନ୍ଦ୍ରିୟ ।

୧ମ ଧାଡ଼ି—ନାକରେ ହାତ ଦେଇ ନିଶ୍ୱାସ ମାର ।

୨ୟ ,,—ହାତ ବୁଲାଇ ଦେଖାଇ ପୁଣି ନାକରେ ହାତ ଦିଅ ।

୩ୟ ଓ ୪ର୍ଥ ଧାଡ଼—ହାତ ଅଙ୍ଗୁଳିରେ ଚମ୍ପା, ଗୋଲାପ ଦେଖାଇ ଓ ନାକରେ ହାତ ଦେଇ ଆନନ୍ଦ ପ୍ରକାଶ କର ।

୫ମ ଓ ୬ଷ୍ଠ ଧାଡ଼—ହାତ ଅଙ୍ଗୁଳିରେ ମଳ ମୂତ୍ର ନିର୍ଦ୍ଦେଶ କରି ନାକରେ ହାତ ଦେଇ ଘୃଣା ପ୍ରକାଶ କର ।

୭ମ ଓ ୮ମ ଧାଡ଼—ନାକରେ ହାତ ଦିଅ ।

---

## ରସନେନ୍ଦ୍ରିୟ ।

୧ମ ପଦ—୧ମ ଧାଡ଼—ଜିଭରେ ହାତ ଦିଅ ।

୨ୟ ,,—ରସ, ସ୍ୱାଦ ଅଙ୍ଗୁଳିରେ ନିର୍ଦ୍ଦେଶ କରି ଜିଭରେ ହାତ ଦିଅ ।

୨ୟ ପଦ—୧ମ ,,—ବଡ଼ ମଣ୍ଡା ଦେଖାଇଲା ପରି ହାତ ପାପୁଲିରେ ଦେଖାଅ ।

୨ୟ ,,—ଆନନ୍ଦ ପ୍ରକାଶ କରି ପାଟିରେ ହାତ ଦେଇ ପୁଣି ପେଟରେ ହାତ ବୁଲାଅ ।

୩ୟ ,,—ହାତ ବଢ଼ାଇ ମାମୁଁ ଘର ନିର୍ଦ୍ଦେଶ କରି ଓ କୁଣିଆକୁ (ସାନ ଶଙ୍କା) ଅଙ୍ଗୁଳିରେ ଦେଖାଅ ।

,,—ପାଟିରେ ହାତ ଦିଅ ଓ ଆନନ୍ଦ ପ୍ରକାଶ କରି ହେଣ୍ଡିମାର ।

,,—ଅମ୍ଳ, ତେନ୍ତୁଳି ହାତ ହଲାଇ ଦେଖାଅ ।

୭ ,,—ଖଟା ଖାଇଲେ ପାଟି ଓ ମୁହଁ ଯେପରି ହୁଏ ସେହିପରି କର ।

୮ମ ,,—ଟକ ଓ ଲେମ୍ବୁର ଆକାର ହାତରେ ଦେଖାଇ ପାଟିରେ ହାତ ମାର ।

୪ର୍ଥ ଧାଡ଼—ଉଭ ବାହାରକର ଦେଖାଅ ।

୪ର୍ଥ ପଦ—୧ମ ,,—ବାଉଅଡ଼ ନିର୍ଦ୍ଦେଶ କର । ବୁଢ଼ା୨ ଲଙ୍କା ଅଙ୍ଗୁଳିରେ ଦେଖା- ଇଲା ପରି ଦେଖାଅ ।

୨ୟ ,,—ଗ୍ରୀବାଇ୨ ମୁଣ୍ଡ ବଙ୍କା କର ।

୩ୟ ,,—ଉଭ ବାହାର କର ଦେଖାଅ ଓ ଅକ୍ଷିରେ ହାତ ମାର ଦେଖାଅ ।

୪ର୍ଥ ,,—ହାତକୁ ହଲାଇ ନିଷେଧ ପ୍ରକାଶ କର ।

୫ମ ପଦ—୧ମ ,,—କଇଅ ଗୋଟାଏ ହାତରେ ନିର୍ଦ୍ଦେଶ କର ଭାଙ୍ଗିଲା ପରି ହାତ କରି ପାଟି ପାଖକୁ ନିଅ ।

୩ୟ ,,—ବେଲ୍ଗୁର ଆକାର ହାତରେ ଦେଖାଇ ଜଟା ନିର୍ଦ୍ଦେଶ କରି ଦେଖାଅ ।

୪ର୍ଥ ,,—ପାଟିରେ ହାତ ଦେଇ ଉଭ ଦେଖାଅ ।

୬ଷ୍ଠ ପଦ—୧ମ ଓ ୨ୟ ଧାଡ଼—ପାଟି ପିଠା ହେଲେ ମୁଣ୍ଡ ଯେପରି ହୁଏ ସେହିପରି କର ।

୩ୟ,୪ର୍ଥ,୫ମ ଓ ୬ଷ୍ଠ ଧାଡ଼—ପୂର୍ବ ଧାଡ଼ି ପରି ମୁଣ୍ଡ କର ।

୭ମ ପଦ—ରସ୍ତୁ, ସ୍ୱାଦ ହାତ ଅଙ୍ଗୁଳିରେ ନିର୍ଦ୍ଦେଶ କର ଓ ଉଭରେ ହାତ ଦିଅ ।

---

## କୃଷକ ।

୧ମ ପଦ—୧ମ ଧାଡ଼—ହାତ ଉପରକୁ କର ।

୨ୟ ,,—ବାମ ହାତ ମୁଠା କରି ଯୋରରେ ତଳକୁ ନୁଆଁଅ ଓ ଦକ୍ଷିଣ ହାତ ତଳକୁ କରି ଯୋରରେ ଆଗକୁ ଚଳାଅ ।

୨ୟ ପଦ—୧ମ ,,—ଅଙ୍ଗୁଳି ହାସ ଗୋଟି୨ ଦେଖାଅ ।

୨ୟ ,,—ଧାନ କୁଣ୍ଡିଲାପରି ହାତ ଚଳାଅ ।

୩ୟ ପଦ—୧ମ ,,—ଦକ୍ଷିଣ ହାତର ପାପୁଲି ତଳକୁ କରି ଚଳାଅ

୨ୟ ,,—ଅଙ୍ଗୁଳିଟିପରେ ଗଣ୍ଡା ଦେଖାଅ ।

୪ର୍ଥ ପଦ—୧ମ ,,—ଅଣ୍ଟା ନଇଁ ହାତରେ ତଳୁ ଘାସ ବାଛିଲାପରି

୨ୟ ,,—ହାତ ଉପରକୁ ଉଠାଇ ଦେଖାଅ ।

୫ମ ପଦ—୧ମ ,,—ନଇଁ କରି ଧାନ କାଟିଲା ପରି ହାତ କର ।

୨ୟ ଯାଉ—ଦୁଇହାତ ଏକାଠି କର ଓ କନ୍ଧ ଫାଙ୍କ ରଖି ବଢ଼ାଇ ଅବାର ଦେଖାଅ ଓ ହାତ ତଳକୁ ଆଣି ଧାନବଡ଼ା ଥୋଇଲା-ପର ଦେଖାଅ ।

୩ୟ ପଦ—୧ମ ,,—ଧାନ ମଳିଲାପର ପାଦ ଚାଳନ କର ।

୨ୟ ,,—ହାତ ବୁଲାଇ ପରେ ଏକାଠି କର ମଧ୍ୟରେ ବେଣି ଫାଙ୍କ କର ସ୍ତୂପ ଦେଖାଅ ।

---

## ପୁଲିସ୍‌ମାନ୍ ।

୧ମ ପଦ—୧ମ ,,—ଯୋର୍‌ରେ ହାତ ଉପରକୁ ଉଠାଅ ।

୨ୟ ପଦ—୧ମ ,,—ବାଉଶଣ୍ଡେ ହାତରେ ଧରିଲାପର ହାତ ମୁଠା କର ସମ୍ମୁଖକୁ ବଢ଼ାଅ ।

୩ୟ ପଦ—୧ମ ,,—ହାତ ବଢ଼ାଇ ଘର ଘର ଦେଖାଅ ।

୪ର୍ଥ ପଦ—୧ମ ,,—"ବାରକୁବାର" ହାତ ସମ୍ମୁଖକୁ ବଢାଇ ୨।୩ ଥର ହଲାଅ ।

୨ୟ ,,—ହାତ ସମ୍ମୁଖକୁ କର ହଲାଅ ।

୫ମ ପଦ—୧ମ ,,—ଛଡ଼ି ରହିଲାପର ଶରୀର ସଞ୍ଚାଳନ କର

୨ୟ ,,—ହାତ ଆଗକୁ ଚାଳନ କର ।

୬ଷ୍ଠ ପଦ—୧ମ ,,—ଟିକିଏ ଗଳି ଅସି ଗୋଟିଏ ପିଲାକୁ ଧରପକାଇ ଛାଡ଼ିଦିଅ ।

୨ୟ ,,—ହାତ ହଲାଇ "ଏବେ ଏବେ" ଦେଖାଅ ।

---

## ପୋଷ୍ଟମାନ୍ ।

୧ମ ପଦ— —ହାତ ଉପରକୁ ବଢ଼ାଅ ।

—ବାକ୍ସକୁ କାଢିଲା ପର ହାତ କର ।

—ହାତରେ ଡାକ ଘର ନିର୍ଦ୍ଦେଶ କର ।

,,—ମୋହର ମାରିଲାପର ବାମ ହାତ ପାପୁଲିରେ ଦକ୍ଷିଣ ହାତ ମୁଠା କର ଯୋରରେ ମାର ।

,,—ଦ୍ୱାରରେ ଭର୍ତ୍ତି କଲାପର ହାତରେ ଦେଖାଅ ।

୫ମ ପଦ—୧ମ ଧାଡ—ବ୍ୟାଘ୍ରକୁ ବାହାରକଲାପରି ହାତ କର ।
୨ୟ ,,—ମୋହର ମାରିଲାପରି ହାତରେ ଦେଖାଅ ।
୬ଷ୍ଠ ,,—୨ୟ ,,—ବ୍ୟାଘ୍ରରେ ପୂରିଲାପରି ହାତ କର ।
୭ମ ,,—୧ମ ,,—ହାତ୨ କରି ହାତରେ ଦେଖାଅ ।

ଶିକ୍ଷକ କାଗଜରେ ଗୋଟିଏ ବ୍ୟାଘ୍ର କରିବେ ଓ କେତେଗଣ୍ଡି ଚିଠି ପିଲା ହାତରୁ ଦେଇ ବ୍ୟାଘ୍ରଟି ପିଲା କାନ୍ଧରେ ଲଗାଇ ଅଭିନୟ କରାଇଲେ ବିଶେଷ ସୁନ୍ଦର ହେବ ।

---

## ବଢ଼େଇ ।

୧ମ ପଦ—୧ମ ଧାଡ—ଉପରକୁ ହାତ ଯୋରରେ ଉଠାଇ ଦେଖାଅ ।
୨ୟ ,, —ହାତରେ ଦେଖାଅ ।
୩ୟ ,, —କରତ କଲାପରି ଓ ରନ୍ଦା ମାରିଲାପରି ହାତ ଚଳାଅ ।
୪ର୍ଥ ,, —ଗଣ୍ଡି ଛେଦିଲାପରି ହାତ କର ।
୫ମ ,, —ନିଃଷେଧ କଲାପରି ହାତ ଚଳାଅ ।

---

## ମାଳୀ ।

୧ମ ପଦ—୧ମ ଧାଡ—ଯୋରରେ ହାତ ଉପରକୁ ଉଠାଅ ।
୨ୟ ,,—୧ମ ,,—କରିଁ୨ ଖୋଳିଲାପରି ହାତ କର ।
୨ୟ ,,—ମାଟି ସମାନ କଲାପରି ହାତ କର ।
୩ୟ ,,—୧ମ ,,—ଘର ଅଡ଼କୁ ହାତ ବୁଲାଇ ହାତକୁ ସିଧା କରି ଦେଖାଅ ।
୪ର୍ଥ ,,—୧ମ ,,—ହାତ ହଲାଇ ପ୍ରଷ୍ଠ କଅଁଳ ଦେଖାଅ ।
୫ମ ,,—୧ମ ,,—ହାତ ହଲାଇ ନାନା ଶାକ-ସବଜି ...
୬ଷ୍ଠ ,,—୧ମ ,,—ପାଣି ସିଞ୍ଚିଲାପରି ହାତ କର ।
୨ୟ ,,—ଘାସ କାଟିଲା ପରି ହାତ କର ।
୭ମ ,,—୧ମ ,,—ହାତ ଦେଖାଇ ଫୁଲ ଫଳ ଦେଖାଅ ।
୨ୟ ,,—ଅଙ୍ଗରେ ହାତ ମାରି ।